# କବି ଦାସୁରାମ



ଶୋଷକଙ୍କ ପାଇଁ ଆତଙ୍କ !
ଶୋଷିତଙ୍କ ପାଇଁ ସ୍ମୃତି !!

କବି ଦାସୁରାମ୍ ,

ଶୋଷକଙ୍କ ପାଇଁ ଆତଙ୍କ !

ଶୋଷିତଙ୍କ ପାଇଁ ସ୍ମୃତି !!



**ପ୍ରକାଶକ :** ଲକ୍ଷ୍ମଣ ମାଝୀ ,ଗ୍ରାମ- ମହାଗୁଡ଼ି ପୋ- ଗୁଲୁବା

ଭାୟା - ଅଡ଼ବା ,ଜିଲ୍ଲା - ଗଜପତି



*(ବେସରକାରୀ ବିତରଣ ନିମନ୍ତେ )*



ସହାୟକ ମୂଲ୍ୟ - ୧ ୦ ଟଙ୍କା

# ଶହୀଦ୍ ଦାସୁରାମ ମାଲେକାଙ୍କୁ ଲାଲ୍‌ସଲାମ୍ !

ସମସ୍ତେ ଦିନେ ନା ଦିନେ ପ୍ରକୃତି ନିକଟରେ ହାରିଯାନ୍ତି । ଜନ୍ମ ହେଲେ ସମସ୍ତଙ୍କୁ ଦିନେ ନା ଦିନେ ମରିବାକୁ ହୁଏ । କିନ୍ତୁ ସମସ୍ତଙ୍କ ମରଣର ଗୁରୁତ୍ୱ ସମାନ ନଥାଏ । ଯେଉଁମାନେ ଦେଶ ତଥା ମଣିଷ ସମାଜ ପାଇଁ କାମ କରି ମରିଥାନ୍ତି , ସେଥିପାଇଁ ଜୀବନ ଦେଇଥାନ୍ତି , ତାଙ୍କର ମରଣ ପାହାଡ଼ ଠାରୁ ବି ଆହୁରି ଭାରି ହୋଇଥାଏ । ଚୀନ୍ ବିପ୍ଲବର ନେତା ତଥା ବିଶ୍ୱ ସର୍ବହରା ବିପ୍ଲବର ଅନ୍ୟତମ ଶିକ୍ଷକ କମ୍ରେଡ୍ ମାଓ ସେତୁଙ୍ଗ୍ ଯଥାର୍ଥରେ କହିଥିଲେ **"ଯେଉଁ ଲୋକ ସାମ୍ରାଜ୍ୟବାଦ ବିରୁଦ୍ଧରେ ତଥା ଜନଗଣଙ୍କ ସ୍ୱାର୍ଥ ପାଇଁ କାମ କରି ମୃତ୍ୟୁ ବରଣ କରେ , ତା'ର ମୃତ୍ୟୁ ପାହାଡ଼ ଭଳି ଓଜନିଆ ! କିନ୍ତୁ , ଯେଉଁ ଲୋକ ଜନଗଣଙ୍କ ବିରୁଦ୍ଧରେ ତଥା ସାମ୍ରାଜ୍ୟବାଦ ସ୍ୱାର୍ଥ ପାଇଁ କାମ କରି ମରେ , ତା'ର ମରଣ ଚଢ଼େଇ ର ପର ଭଳି ହାଲୁକା !!"**

ଓଡ଼ିଶା ରାଜ୍ୟର ଅବିଭକ୍ତ ଗଂଜାମ ଜିଲ୍ଲା ତଥା ଗଜପତି ଜିଲ୍ଲା ମୋହନା ବ୍ଲକର ରାଇପଙ୍କା ପଂଚାୟତ ପାହାଡ଼ ଉପର ଗାଁ ମହାଗୁଡ଼ି । ଏହି ଗାଁ ର ଏକ ଗରିବ କୁଇ ଆଦିବାସୀ ପରିବାରରେ ଜନ୍ମ ହୋଇଥିଲେ ଚାଷୀ ମୂଲିଆ ସମିତିର ନେତା , କୁଇ ଜନକବି , କୁଇ ଭାଷାବିତ୍ ତଥା ଚଳମାନ ସଶସ୍ତ୍ର ମୁକ୍ତି ଆନ୍ଦୋଳନ ଧାରାର ଜଣେ ସଂଗ୍ରାମୀ ସାଥି ଦାସୁରାମ ମାଲେକା । ରାୟଗଡ଼ା-ଗଜପତି ର ମହାମାରୀ ଆକ୍ରାନ୍ତ ଜନତାଙ୍କ ସେବା କରିବା ଅବସରରେ କମ୍ରେଡ୍ ଦାସୁରାମ ନିଜେ ମହାମାରୀର ଶିକାର ହୋଇ ଗତ ୨୦୦୭ ସେପ୍ଟେମ୍ବର ୧୦ ତରିଖରେ ମୃତ୍ୟୁ ବରଣ କରିଛନ୍ତି । ସାମ୍ରାଜ୍ୟବାଦ ଓ ତା'ର ଦଲାଲ୍ ଅମଲାତାନ୍ତ୍ରୀକ ପୁଁଜିପତି-ଜମିଦାର ଙ୍କ କବଳରୁ ଦେଶ ଓ ଜନତାଙ୍କୁ ମୁକ୍ତ କରି ଏକ ଶୋଷଣ ବିହୀନ ସମାଜ ଗଠନ ଲକ୍ଷ୍ୟରେ ସଂଗ୍ରାମ କରୁଥିବା ଏହି ବିପ୍ଲବୀ , ଜନଗଣଙ୍କ ସେବା କରୁ କରୁ ଶହୀଦ୍ ହୋଇଯାଇଛନ୍ତି । ତାଙ୍କର ମୃତ୍ୟୁ ନିଶ୍ଚିତ ରୂପେ ରାୟଗଡ଼ା-ଗଜପତି ଜିଲ୍ଲା ସିମାନ୍ତରେ ଥିବା ବୁଡେଡ଼ି ପାହାଡ଼ ଠାରୁ ଆହୁରି ଭାରି , ଆହୁରି ଓଜନଦାର ହୋଇଯାଇଛି । ତାଙ୍କ ସଂଗ୍ରାମୀ ଜୀବନ ଆମ ପାଇଁ ଛାଡ଼ି ଯାଇଛି ଅନେକ ଶିଖିବାର ବିଷୟ , ଆହୁରୀ ଅନେକ ଗୁରୁ ଦାୟିତ୍ୱ , ଅନେକ ନୂଆ ନୂଆ ଚିନ୍ତା କରିବାର ବିଷୟ ! ଆମ ସଂଗଠନ ଗଣ ନାଟ୍ୟ ମଂଚ ର ପ୍ରତିଷ୍ଠାତା ସାଥି ଦାସୁରାମ୍ ଙ୍କ ପ୍ରତି ଆମର ଲାଲ୍‌ସଲାମ୍

ଜଣାଇବା ସଂଗେ ସଂଗେ ତାଙ୍କର ସଂଗ୍ରାମୀ ଜୀବନ ଉପରେ ଏହି ପୁସ୍ତିକାଟି ପ୍ରକାଶ କରୁଛୁ । ଏହି ଲେଖା ଗୁଡ଼ିକରୁ ଅନେକ ସିଧାସଳଖ ଆମେ ସଂଗ୍ରହ କରିଛୁ । ଆଉ କିଛି ବିଭିନ୍ନ ପତ୍ର ପତ୍ରିକାରୁ ସଂଗୃହୀତ । ଦାସୁଙ୍କୁ ଭଲ ପାଉଥିବା ଲୋକଙ୍କ ପାଖିରେ ଏସବୁ ପହଂଚାଇବାକୁ , ସବୁ ଲେଖାକୁ - ଏପରିକି ଆଗରୁ ପ୍ରକାଶିତ ଲେଖାକୁ ଆମେ ଏକାଠି କରି ପ୍ରକାଶ କରିବାକୁ ଚେଷ୍ଟା କରୁଛୁ । କେତେ ସଫଳ ହେଲୁ , ତାହା ପାଠକେ କହିବେ । ଦାସୁରାମଙ୍କ ଅଧୁରା କାମକୁ ପୁରା କରିବା ଦିଗରେ ଆଗେଇ ଯିବା ପାଇଁ ଆମେ ସମସ୍ତ ସାଥି ଓ ସମର୍ଥକଙ୍କୁ ଆହ୍ୱାନ କରୁଛୁ ।

୩୦ । ୧୨ । ୨୦୦୭
ମାଂଦ୍ରାୱାଜୁ ଶହୀଦ୍ ଦିବସ

**ଗଣ ନାଟ୍ୟ ମଂଚ**
**ରାୟଗଡ଼ା-ଗଜପତି ଡିଭିଜନାଲ୍ କମିଟି**

# ବିପ୍ଲବୀ ଦାସୁରାମ୍ ଚିରଦିନ ବଂଚି ରହିବେ !

-ଶରତ

ବିପ୍ଲବୀ ଦାସୁରାମ , ଆମ ବିପ୍ଲବୀ ଜୀବନର ଅନ୍ୟତମ ଘନିଷ୍ଟ ସହଯୋଗୀ , ଆଜି ଆଉ ନାହାଁନ୍ତି । ଗୁଡ଼ିପଙ୍କାର ଦାସୁ , ମହାଗୁଡ଼ି ର ଯାକବ , ଚାଷୀ ମୂଲିଆ ସମିତି ନେତା ଜୟରାମ୍ , ସାଥି ମାନଙ୍କ ଶ୍ରଦ୍ଧାର ପାଙ୍ଗି ( ପାଙ୍ଗି ଦାଦା) - ଏମିତି ବହୁ ନାମରେ ପରିଚିତ , ଅନେକ ପ୍ରତିଭାର ଅଧିକାରୀ ଏକ ବିପ୍ଲବୀ ଜୀବନ ସବୁ ଦିନ ପାଇଁ ବିଶ୍ରାମ ନେଇଯାଇଛି । ମରିବାର ମାତ୍ର କେଇ ଘଂଟା ଆଗରୁ ,ନିଜର ଅନ୍ୟତମ କଳାକାର ସହଯୋଦ୍ଧା ମହାମାରୀ ଆକ୍ରାନ୍ତ ମହାଗୁଡ଼ିର ସାଥି ଯୋଶେଫ୍ କୁ ରୋଗ ଶଯ୍ୟାରେ ସେବା କରୁଥିଲେ ଦାସୁ । ସେପ୍ଟେମ୍ବର ୯ ତାରିଖ ଦିନ ସେବା କରୁ କରୁ କୌଣସି ନା କୌଣସି ଅସାବଧାନତା ଯୋଗୁଁ ସେ ନିଜେ ଅପରାହ୍ନ ୪ ଘଂଟାରେ ମହାମାରୀ ଦ୍ୱାରା ଆକ୍ରାନ୍ତ ହେଲେ । ଗାଁ ଲୋକଙ୍କ ସହାୟତାରେ ଯୋଶେଫ୍ କୁ ଡାକ୍ତରଖାନା କୁ ପଠାଇ ଦେଲେ । ହେଲେ ନିଜ ପାଇଁ ସେ କିଛି କରି ପାରିଲେନି । ଏପଟେ ସରକାରୀ ସନ୍ତ୍ରାସ , ସେପଟେ ମହାମାରୀ ରେ ମରିବାର ଭୟ ! ପୋକମାଛି ପରି ମରୁଥିବା ମହାମାରୀ ଆକ୍ରାନ୍ତ ଲୋକଙ୍କ ପାଇଁ ସିନା ଏ ସରକାର ର ନିଘା ନାହିଁ । ହେଲେ , ସେହି ଅଧାମରା ଲୋକଙ୍କୁ ଲାଗିପଡ଼ି ବଂଚାଇବା ପାଇଁ ଅଂଟା ଭିଡ଼ିଥିବା ଦାସୁରାମ କୁ ଜୀବନ୍ତ ଅବା ମୃତ ଧରିବା ପାଇଁ ନବୀନ ସରକାର ର ତାହାଳ କୁକୁର ପୋଲିସ୍ ମାନେ ଘୁରି ବୁଲୁଛନ୍ତି । ଲୋକେ କେମିତି ବା ଦାସୁ କୁ ନେଇଥାନ୍ତେ ଡାକ୍ତରଖାନା କୁ ? ସହଜେ ଡାକ୍ତରଖାନା ତ ଗାଁ ଠାରୁ ୧୮ କିଲୋମିଟର ଦୂରରେ । ଢୁ ଢୁ ବର୍ଷା ମଧ୍ୟରେ ଲୋକେ ଧାଇଁଲେ ମାଲୁଆ ଡାକ୍ତର (କ୍ୱାକ୍)ମାନଙ୍କ ପାଖକୁ । ଚିକିତ୍ସା ସୁଯୋଗରୁ ବଂଚିତ ମାଳ ଅଂଚଳର ଜନତାଙ୍କ ପାଇଁ ସମତଳ ଅଂଚଳରୁ ଯାଇଥିବା ଏହି ଅଧାପାଠୁଆ ଔଷଧ ବେପାରୀମାନେ ହିଁ ଅସଲରେ ଡାକ୍ତର । ମାଲୁଆ ଡାକ୍ତର ଠିକ୍ ସମୟରେ ଆସିଲାନି । ନିଜ ପାଖରେ ଥିବା ଔଷଧରେ ନିଜେ ଚିକିତ୍ସା ହୋଇ ବଂଚି ରହିବା ପାଇଁ ଦାସୁ ଆପ୍ରାଣ ଚେଷ୍ଟା କଲେ । ହେଲେ ନାଁ ସେ ବଂଚାଇ ପାରିଲେ ନିଜର ସାଥି ଯୋଶେଫ୍ କୁ , ନାଁ ସେ ବଂଚାଇ ପାରିଲେ ନିଜକୁ । ସେପ୍ଟେମ୍ବର ଦଶ ତାରିଖ ଦିନ ସକାଳ ନଅ ଘଂଟା ତିରିଶ ମିନିଟ୍ ରେ ସାଥି ଦାସୁ ଟଳି ପଡ଼ିଲେ । ସରକାରୀ ସନ୍ତ୍ରାସ ଯୋଗୁଁ , ଚିକିତ୍ସା ନପାଇ ଦାସୁ ମରିଗଲେ । ଏକ ମହାନ ଆଦର୍ଶ ପାଇଁ କାମ କରୁ କରୁ , ଜନତାଙ୍କ ସେବା କରୁ କରୁ ସେ ଆଜି ଶହୀଦ୍ ହୋଇଯାଇଛନ୍ତି । ତାଙ୍କର ମରଣ ମଧ୍ୟ ଦେଇ ସେ ଏ ଶୋଷକ ସରକାର ର ଅସଲ ଚେହେରା କୁ ଜନ ମାନସରେ ଖୋଲି ଦେଇଛନ୍ତି । ପୁଁଜିବାଦୀ ଗଣତନ୍ତ୍ରର ଅସଲ ମୁଖା , ତାର କଥିତ ଜନ ମଙ୍ଗଳକାରୀ ଚରିତ୍ର କୁ ପଦାରେ ପକାଇ ଦେଇଛନ୍ତି ।

## ଦାସୁଙ୍କ ପିଲା ଦିନ :

ଗଜପତି ଜିଲ୍ଲା ମୋହନା ବ୍ଲକର ରାଇପଙ୍କା ପଂଚାୟତ ମହାଗୁଡ଼ିରେ ବିପ୍ଲବୀ ଦାସୁ ଜନ୍ମ ହୋଇଥିଲେ । ଏକ ଗରିବ କୁଇ ଆଦିବାସୀ ପରିବାରେ ତାଙ୍କର ଜନ୍ମ । ଗାଁ ଓ ଆଖପାଖ ଗାଁର ଅଧିକାଂଶ କୁଇ ଓ ଦଳିତ ଲୋକଙ୍କ ପରି ତାଙ୍କ ପରିବାର ମଧ ବଂଚେ ଅଭାବ ମଧରେ । ସହଜେ ଏଇ ସରା ଓ କୁଇ ଆଦିବାସୀଙ୍କ ବାସଭୂମିଟା ଅନାବୃଷ୍ଟି ଅଂଚଳ । କେତେ ଆଦିବାସୀଙ୍କ ଜମିରୁ ପୁଳାଏ ଜମି ଠକେନକ କରି ମାଡ଼ି ବସିଥିଲେ କେତେଜଣ ହାତ ଗଣତି ଅଣଆଦିବାସୀ ଟାଉଟର । ସାଧାରଣ ଆଦିବାସୀ ଦଳିତ ଲୋକ ବଣର କଂଦା ,* ଟାଙ୍କୁ ଜାଉ ଖାଇ ବଂଚୁଥିଲେ । କେବେ କେବେ ପାଚିଲା ତେନ୍ତୁଳି ଓ କୁସୁମ କୋଳି କୁ ଭୋକ ବିକଳରେ ମଂଜି ସହ ଗିଳି ଦେଉଥିଲେ । କାଙ୍ଗୁ ଭାତ କି ଘାଂଟିଆ ଭାତ ଅବା ମାଣ୍ଡିଆ ଜାଉ ଟିକିଏ ମିଳିଲେ ଆଦିବାସୀର ଖୁସି କହିଲେ ନସରେ । ଧାନ ଚାଉଳର ଭାତ ଥିଲା ଏ ଲୋକଙ୍କ ପାଇଁ ଏକ ପ୍ରକାର ସ୍ୱପ୍ନ । ଆଦିବାସୀ ର ଭୋଟ୍ ବଦଳରେ ସରକାର ବାହାଦୂର ଦେଉଥିବା ପୋକଖିଆ କଂଟ୍ରୋଲ ଚାଉଳ ଯଦି କଳା ବେପାରୀ ଡିଲରଙ୍କ କବଳରୁ ବଳି କେବେ କେବେ ମିଳିଯାଏ , ତାହେଲେ ଘରେ ଭାତ ର ବାସନା ମିଳେ । ଜମି ଅଭାବରୁ ପୁଣି ମରୁଡ଼ି ରୁ ବଂଚିବା ପାଇଁ , ପାହାଡ଼ ହାଣି ପୋଡୁ ଚାଷ କଲେ ; ଫରେଷ୍ଟ ଗାର୍ଡକୁ ଲାଂଚ ଦେବାକୁ ହୁଏ । ସେ ଗାଁ ଗାଁ ବୁଲି କୁକୁଡ଼ା ,କାନ୍ଦୁଲ ଓ ଟଂକା ନେଇ ଯାଏ । ନଦେଇ ପାରିବା ଲୋକ ନାଁରେ କେଶ୍ ଲଗାଇ ଦିଏ । କୋର୍ଟ କୁ ଧାଇଁ ଧାଇଁ ଓକିଲ ଓ କୋର୍ଟ କର୍ମଚାରୀଙ୍କ ଶୋଷଣ ଜାଲରେ ପଡ଼ି , ଟଂକା ଗଣି ଗଣି ଆଦିବାସୀ ମରିଯାଏ । ଗାଇ , ଛେଳି , କୁକୁଡ଼ା ଅବା ମଇଁଷି ପୋଷିଲେ ସରକାରକୁ ଆଦିବାସୀମାନେ ଜଙ୍ଗଲ ସିସ୍ତ ବାନ୍ଧିବାକୁ ହୁଏ । କାରଣ ହେଉଛି , ଏଇ ଆଦିବାସୀଙ୍କ ପୋଷା ଜନ୍ତୁଗୁଡ଼ା ଡାଳପତ୍ର ଖାଇ ଜଙ୍ଗଲ ନଷ୍ଟ କରୁଛନ୍ତି ! ଆଦିବାସୀ ଲୋକ ସରକାରୀ କଟକଣା ଯୋଗୁଁ ନିଜେ ମଦ ରାନ୍ଧି ଖାଇ ପାରେନା । ଥାନାରେ ଟଂକା ଦେଇ ଅଣ ଆଦିବାସୀ ଅସାଧୁ ମଦ ବେପାରୀମାନେ ମଦ ରାନ୍ଧନ୍ତି । ତାକୁ କିଣି ଖାଇ ଆଦିବାସୀ ମଦ ସାହୁକାର ପାଖେ ଋଣ କରେ- ଗୋଡି ଖଟେ - ଶୁଝି ନପାରିଲେ ତା ଜମି ସାହୁକୁ ଦେଇ ନିଜେ ଜମିହୀନ ପାଲଟେ । ନୂଆ ଜଙ୍ଗଲ ହାଣି ପଦା କରେ । ସେଥିପାଇଁ ଗାର୍ଡକୁ ଲାଂଚ ଦିଏ । ପଟ୍ଟା ପାଇବା ଆଶାରେ ମିଛି ମିଛିକା ଚେନ୍ ପକାଇ ଟିକେ ମାପି ଦେଲେ ଆର୍ଆଇ କୁ ଲାଂଚ ଦିଏ । ଏମିତି ସବୁ ଲାଂଚ ପାଇଁ ପୁଣି ସାହୁକାର ପାଖେ ଋଣ କରେ , ସୁଧ ଶୁଝୁ ଶୁଝୁ ଋଣ ଶୁଝି ନପାରି ଠକି ହୁଏ । ବଳକା ଜମିତକ ହରାଏ । ରୋଗ ବଇରାଗ ହେଲେ

** ଆମ୍ବ ଟାକୁଆର କୋଇଲି ରୁ ପ୍ରସ୍ତୁତ ଜାଉ*

ଚିକିତ୍ସା ଅଭାବରୁ ଅନ୍ଧବିଶ୍ୱାସ ବଶତଃ ଜାନି ବା ଦ୍ଲମ୍ବା* କୁ ଦେଇ ପେନୁ* ପାଖରେ କୁକୁଡ଼ା ଅଣ୍ଡା ପୂଜା କରି ମରେ । କଥିତ ଉଚ୍ଚ ଜାତି ର ସାହୁକାର ଓ ଅଣ ଆଦିବାସୀମାନେ ଆଦିବାସୀଙ୍କୁ ଅସ୍ପୃଶ୍ୟ ମନେ କରୁଥିଲେ । ସେମାନଙ୍କ ମାଆ ଭଉଣୀଙ୍କୁ ରକ୍ଷୀତା କରି ରଖୁଥିଲେ ଏବଂ ନାନା ବାଟରେ ଅତ୍ୟାଚାର କରୁଥିଲେ । ମୋଟ ଉପରେ କହିଲେ , ସରକାରୀ ଓ ସାହୁକାରୀ ଶୋଷଣ ଗୁଡ଼ିକ , ଶୋଷଣ ମୁଦ୍ରାର ଦୁଇଟି ପାଖ ସାଜି ଦାସୁରାମଙ୍କ ପରିବାର ସମେତ ସମଗ୍ର ଆଦିବାସୀ ସମାଜକୁ ଖାଇଚାଲିଥିଲା । ଏହିପରି ଅଭାବି ଜୀବନ ଓ ଦୁଃଖ ମଧ ଦେଇ ଦାସୁଙ୍କ ପିଲା ଦିନ କଟିଥିଲା ।

ଅଭାବ ଅସୁବିଧାରେ ଦାସୁରାମଙ୍କ ଛଅ ଛଅଟି ଭାଇ ଭଉଣୀ ମରି ଯାଇଥିଲେ । ଦାସୁଙ୍କୁ ଛାଡ଼ିଦେଲେ ତାଙ୍କର ଏକମାତ୍ର ଭଉଣୀ ବଂଚିଥିଲେ । ପୋକମାଛି ପରି ମରୁଥିବା ନିଜ ଭାଇ ଭଉଣୀ ମାନଙ୍କୁ ଦେଖି ଦେଖି ଦାସୁ ଏପରି ଅନୁଭବବାଦ ର ଶୀକାର ହୋଇଥିଲେ ଯେ , ପରିବାର ନିୟନ୍ତ୍ରଣ କରି ଗୋଟିଏ ବା ଦୁଇଟି ପିଲା ଜନ୍ମ କରିବା ପାଇଁ ସରକାରୀ/ ବେସରକାରୀ ପରାମର୍ଶ ଆସିଲେ, ସେ ସହଜରେ ଗ୍ରହଣ କରି ପାରୁ ନଥିଲେ । ଅତି ସହଜ ସରଳ ଢଙ୍ଗରେ ସେ କହି ପକାଉଥିଲେ , "ଆମେ ସିନା ସାତ ଜଣ ଜନ୍ମ ହେବାରୁ ଦି ଜଣ ବଂଚିଲୁ । ଯଦି ଦି ଜଣ ଜନ୍ମ ହୋଇଥାନ୍ତୁ ?" । ଏକଥା ଶୁଣି କିଏ କିଏ ହସି ପକାନ୍ତି । କିନ୍ତୁ , ଅନ୍ୟ ଦିଗରୁ ଦେଖିଲେ , ଏହି କଥା ପଦକରେ ଲୁଚି ରହିଥିଲା ଆଦିବାସୀ ଜୀବନର ବାସ୍ତବତା ; ସେମାନଙ୍କ ଜୀବନର ଦୁଃଖ ଓ ଅଭାବ । ଗୋଟେ ବା ଦିଟା ପିଲା ଜନ୍ମକରି ସେମାନଙ୍କୁ ଚିକିତ୍ସାର ଗ୍ୟାରେଂଟି ଦେଇ ବଂଚାଇବା ର ସାହାସ କାହା ପାଖରେ ନଥିଲା ବା ଆଜି ବି ନାହିଁ । ଏଭଳି ଅଭାବି ଜୀବନରେ ବଢ଼ି ଆସିଥିବା ଦାସୁ , ତାଙ୍କ ବିପ୍ଲବୀ ଜୀବନରେ କେବେ ବି ଅଯଥା ଖର୍ଚ୍ଚ କିମ୍ବା ବଦ୍ ଖର୍ଚ୍ଚ କରିଥିବାର କେହି ଉଦାହରଣ ଦେଇ ପାରିବନି । ସେ ସର୍ବଦା କିପରି କମ୍ ଖର୍ଚ୍ଚରେ କାମ ହେବ , ସବୁ ବିପ୍ଲବୀ କିପରି ସରଳ ଓ ସାଧା ସିଧା ଜୀବନ ଯାପନ କରିବା ଉଚିତ୍ ତା ଉପରେ ଜୋର୍ ଦେଉଥିଲେ ।

ଦାସୁଙ୍କୁ ଯେତେବେଳେ ମାତ୍ର ସାତ ଆଠ ବର୍ଷ , ରାସ୍ତାରେ ବଣୁଆ ବାଘୁଆ ମହୁମାଛି କାମୁଡ଼ି କାମୁଡ଼ି ତାଙ୍କ ବାପା ଗାନ୍ଦେଲିଙ୍ଗ୍ ବା *ଗୁଡ଼ିପାଙ୍ଗେଜିକୁ ମାରି ଦେଲେ । ଦାସୁ ଶିକ୍ଷା ଠାରୁ ଦୂରରେ ଥିବା ଅତ୍ୟନ୍ତ ପଛୁଆ ସମାଜରେ ବଢ଼ିଥିଲେ । ତାଙ୍କ ପିଲାଦିନେ ହିଁ ତାଙ୍କ

---

*କୁଇ ଆଦିବାସୀଙ୍କ ପୂଜାରୀ କୁ ଦ୍ଲମ୍ବା କୁହାଯାଏ ।

* କୁଇ ଆଦିବାସୀଙ୍କ ଦେବତାମାନଙ୍କୁ ପେନୁ କୁହାଯାଏ ।

* କୁଇ ପୁରୁଷମାନେ ଯେଉଁ ଗାଁ ଝିଅକୁ ବାହା ହୁଅନ୍ତି , ସେହି ଅନୁସାରେ ମଧ ତାଙ୍କୁ ଲୋକେ ନାମ ଦେଇଥାନ୍ତି । ଗୁଡ଼ିପାଙ୍ଗା ର ଝିଅକୁ ବାହା ହୋଇଥିବାରୁ ତାଙ୍କ ନାଁ ଥିଲା ଗୁଡ଼ିପାଙ୍ଗେଜି ।

ଗାଁ ଲୋକ ପୁରୁଣା ଆଦିବାସୀ ଧର୍ମ ବା ପ୍ରକୃତି ପୂଜା ଛାଡ଼ି ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିଲେ । ତାପରେ ସେ ଦାସୁରାମ ମଳିକରୁ ଯାକବ ମଳିକ ପାଲଟି ଯାଇଥିଲେ । ବାପା ମଲାପରେ ଦାସୁ ନିଜ ଗାଁ ମହାଗୁଡି ଛାଡି , ପାଖରେ ଥିବା ମାମୁଁ ଘର ଗାଁ ଗୁଡ଼ିପଙ୍ଗା କୁ ମା' ସହ ଚାଲିଯାଇଥିଲେ । ଗୋଟିଏ ପଟେ ବ୍ରାହ୍ମଣବାଦୀ ହିନ୍ଦୁଧର୍ମ ଓ ଅନ୍ୟପଟେ ଖ୍ରୀଷ୍ଟଧର୍ମ , ଉଭୟଙ୍କ କବଳରେ କିଭଳି କ୍ରମଶଃ ପୁରୁଣା ଆଦିବାସୀ ଧର୍ମ ଲୋପ ହେଉଥିଲା , ଦାସୁ ଥିଲେ ତାହାର ପ୍ରତ୍ୟକ୍ଷଦର୍ଶୀ । ଖ୍ରୀଷ୍ଟଆନ୍ ହେଲାପରେ ପ୍ରଥମ କରି ପ୍ୟାଂଟ ପିନ୍ଧିଥିବା ଦାସୁ, ପରଦିନ ସକାଳୁ ଝାଡ଼ାଗଲା ବେଳେ ବୋତାମ ଖୋଲି ନପାରି ହଇରାଣ ହୋଇଥିଲେ । ପ୍ରଥମ କରି କାର୍ ଟିଏ ରାସ୍ତାରେ ଦେଖି ତାକୁ ସେ ଏକ ଜନ୍ତୁ ଭାବିଥିଲେ ।

ଏତେ ପଛୁଆ ସମାଜରେ ଜନ୍ମ ହୋଇ ବି ସେ ଜଣେ ବିପ୍ଳବୀ ହୋଇ ପାରିଲେ । ବିପ୍ଳବୀ ହେବାରେ ତାଙ୍କର କୌଣସି ପେଟି ବୁର୍ଜୁଆ ଭାବପ୍ରବଣତା ନୁହେଁ , ବରଂ ଜୀବନର ବାସ୍ତବ ପରିସ୍ଥିତି ହିଁ ତାଙ୍କୁ ପ୍ରେରଣା ଯୋଗାଇଥିଲା । ବାପା ଛେଉଣ୍ଡ ଦାସୁରାମକୁ ତାଙ୍କ ମାଆ ଗୁଣ୍ଡିଗାଲୁ* ବା ବାନ୍ଦାମାଇ ବହୁ କଷ୍ଟରେ ମାତ୍ର ସପ୍ତମ ଶ୍ରେଣୀ ପାଠ ପଢ଼ାଇ ପାରିଥିଲେ । ପାଠ ହିଁ ଆଦିବାସୀଙ୍କ ଦୟନିୟ ଅବସ୍ଥାରେ ପରିବର୍ତନ ଆଣିପାରିବ ବୋଲି ପ୍ରଥମେ ଦାସୁଙ୍କର ବିଶ୍ୱାସ ଥିଲା । ସେଥିପାଇଁ ପଢ଼ିବାକୁ ସେ ବହୁ ଚେଷ୍ଟା କଲେ । ରାସ୍ତା କୁଲି କାମ କରି , ସଳପ ମଦ କାଟି ତାକୁ ବିକି ତା'ରି ପଇସାରେ ସେ ପାଠ ପଢ଼ିବାକୁ ଚେଷ୍ଟା କଲେ । ଦାସୁ ସ୍କୁଲକୁ ଗଲାବେଳେ ସାଥିରେ ନେଉଥିଲେ * ସଳପ ଚୂନା - ଖାଇବା ପାଇଁ । ପରିବାର ର ଆର୍ଥିକ ଅବସ୍ଥା ତାଙ୍କ ପାଠ ପଢ଼ାରେ ଡୋରି ବାନ୍ଧିଲା । ପାଠ ପଢ଼ିବା ନେଇ ତାଙ୍କ ଜୀବନରେ ଥିବା ଅବଶୋଷକୁ ପୁରଣ କରିବା ନିମନ୍ତେ, ସରକାର ତାଙ୍କୁ ଧରିବା ପାଇଁ ଖୋଜି ବୁଲୁଥିବା ଅବସ୍ଥାରେ ମଧ ସେ ପତ୍ର ବିନିମୟ ପାଠ୍ୟକ୍ରମ ଜରୀଆରେ ଗୁପ୍ତରେ ମାଟ୍ରିକ୍ ପରୀକ୍ଷା ଦେବାକୁ ଚେଷ୍ଟା କରୁଥିଲେ । ଏ ଚେଷ୍ଟାରେ ସେ ସଫଳ ହେଲେ ନାହିଁ ସତ । ମାତ୍ର ନବମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିବାରେ ସଫଳ ହେଲେ (ହିନ୍ଦି ବୋର୍ଡ଼ରେ) ।

---

** କୁଇ ମହିଳା ମାନଙ୍କ ନିଜସ୍ୱ ନାମ ନଥାଏ । ଥିଲେ ଲୋକେ ସେଇଟା ପାସୋରି ଯାଆନ୍ତି । ବାପଘରେ ଥିଲା ବେଳେ କୋଉ ଗାଁ ରେ ତା ବିବାହ ପାଇଁ ସମ୍ବନ୍ଧ ହୁଏ , ସେ ଗାଁ ଅନୁସାରେ ପରିଚିତ ହୁଏ । ବିବାହ ପରେ ଶାଶୁ ଘର ଗାଁରେ ବାପ ଘର ଗାଁ ନାଁ ଅନୁସାରେ ପରିଚିତ ହୁଏ । ଗୁଣ୍ଡିଗାଲୁ ର ଅର୍ଥ ଗୁଡ଼ିପଙ୍ଗା ରୁ ଆସିଥିବା ବୋହୂ । ଦାସୁଙ୍କ ମାମୁଁ ଘର ଥିଲା ଗୁଡ଼ିପଙ୍ଗା ।*

* ସଳପ ଗଛର ଗଣ୍ଡିକୁ ଫଡ଼ା କରି , ତା ମଧରେ ଥିବା ମଜକୁ କୁଟି ଗୁଣ୍ଡକରି , ଭୋକିଲା କୁଇ ଲୋକେ ଖାଦ୍ୟ ରୂପେ ବ୍ୟବହାର କରିଥାନ୍ତି ।

**ଦାସୁଙ୍କ ଯୁବକ ସମୟ :**

ଅତି ଅଳ୍ପ ବୟସରେ ସେ ଗୋହିବନ୍ଧା ର ଗୋହିଙ୍ଗାଲୁ* ଙ୍କୁ ବିବାହ କଲେ । ଚାଷବାସ କରି ପରିବାର ଭରଣ ପୋଷଣ କଲେ । କିନ୍ତୁ , ଏ ଜୀବନ ଦାସୁଙ୍କୁ ସନ୍ତୁଷ୍ଟ କରି ପାରିଲାନି । ନିଜ ଆଦିବାସୀ ସମାଜ କୁଇ ଓ ସରା ଲୋକଙ୍କ ଦୁଃଖ , ନିଜ ଭାଷା-ସଂସ୍କୃତିର କରୁଣ ଅବସ୍ଥା ତାଙ୍କୁ ପ୍ରଥମରୁ ବ୍ୟଥିତ କରି ରଖିଥିଲା । ପ୍ରଥମେ ପ୍ରଥମେ ନିଜ ଭାଷାର ସୁରକ୍ଷା ପାଇଁ ସେ କୁଇ ଭାଷାରେ ଖ୍ରୀଷ୍ଟିଆନ୍ ଭଜନ ଓ ଆଦିବାସୀ ବାହାଉତ୍ସବ ପାଇଁ ଗୀତସବୁ ରଚନା କରୁଥିଲେ । ଓଡ଼ିଆ ବଦଳରେ କୁଇ ଭାଷାରେ ଧର୍ମୀୟ ପ୍ରଚାର କରିବାକୁ ଦାବିକରି , ଖ୍ରୀଷ୍ଟିଆନ୍ ମଣ୍ଡଳିଗୁଡ଼ିକୁ ଚିଠି ଲେଖୁଥିଲେ । କୁଇ ଭାଷାର ଲିପି ନଥିବାରୁ , ଓଡ଼ିଆ ଲିପିରେ ହିଁ ଗୀତଗୁଡ଼ିକୁ ଲେଖୁଥିଲେ । ପରିଶେଷରେ , ନିଜ ଭାଷାପ୍ରତି ତାଙ୍କର ଅଗାଧ ପ୍ରେମ ଓ ଆଦିବାସୀଙ୍କ ଶୋଷିତ ଅବସ୍ଥାର ପରିବର୍ତ୍ତନ ପାଇଁ ତାଙ୍କର ଆନ୍ତରିକ ଇଚ୍ଛା, ତାଙ୍କୁ ବିପ୍ଳବ ପଥରେ ଟାଣି ନେଲା । ୧୯୯୫-୯୬ ରେ **ଚାଷୀ ମୂଲିଆ ସମିତି** ନେତୃତ୍ୱରେ ରାୟଗଡ଼ା - ଗଜପତି ଜିଲ୍ଲାରେ ମୁଣ୍ଡ ଟେକିଥିବା **ନକ୍ସଲବାଡ଼ି ଧାରାର ବିପ୍ଳବୀ ଗଣ ସଂଗ୍ରାମ** ତାଙ୍କୁ ଆକର୍ଷିତ କରିଥିଲା । କୁଇ ଲୋକଙ୍କ ଭାଷା- ସଂସ୍କୃତି ର ସୁରକ୍ଷା କରିବା ସହ କୁଇ ଯୁବକମାନଙ୍କୁ ଲଢ଼ାକୁ କରିବା ପାଇଁ ଗଠନ ହୋଇଥିଲା , ଚାଷୀ ମୂଲିଆ ସମିତି ର ସହଯୋଗୀ ସଂଗଠନ **କୁଇ ଲାଡ୍ଡେଙ୍ଗା ସଂଘ** ବା କୁଇ ଯୁବକ ସଂଘ । ଏହି ସଂଗଠନରେ ଯୋଗଦେବା ପାଇଁ ଦାସୁଙ୍କୁ କେହି ପ୍ରବର୍ତାଇ ନଥିଲେ । ବରଂ, ସେ ଏହି ଆନ୍ଦୋଳନରେ ନିଜେ ଖୋଜି ଖୋଜି ସାମିଲ୍ ହୋଇଥିଲେ । ତାଙ୍କ ଶଶୁର ଘର ଗାଁ ଗୋହିବଂଧା ର କାନ୍ଥବାଡ଼ରେ କୁଇ ଭାଷାରେ ଲିଖିତ ବିପ୍ଳବୀ ସ୍ଲୋଗାନ୍ ପଢ଼ି ସେ ସଂଗଠନ ଲୋକଙ୍କୁ ଖୋଜି ବୁଲିଥିଲେ । "ଏ ହିଁ ପ୍ରକୃତ ସଂଗଠନ , ଯିଏ ଆମର ଦୁଃଖ ଓ ଆମ ଭାଷାର ଦୁଃଖକୁ ଠିକ୍ ରେ ବୁଝି ପାରିଛି । ଏ ସଂଗଠନ କୁ ଆମେ ନିଜର କରିବାକୁ ହେବ ।" - ଏ ଥିଲା ଦାସୁଙ୍କ ପ୍ରଥମ ପ୍ରତିକ୍ରୀୟା ।

**ବିପ୍ଳବୀ ଜନନେତା ତଥା କବି ଦାସୁ :**

ବିପ୍ଳବୀ ଆନ୍ଦୋଳନରେ ସାମିଲ୍ ହେବା ପରେ ଦାସୁ ଆଉ ପଛକୁ ଫେରି ଚାହିଁନାହାନ୍ତି । ଜମି , ଜଳ ,ଜଙ୍ଗଲ ଓ ପ୍ରାକୃତିକ ସଂପଦ ଉପରେ ଆଦିବାସୀର ଅଧିକାର ପାଇଁ ସେ ଲଢ଼ି ଚାଲିଲେ । ଗାର୍ଡ - ଫରେଷ୍ଟର , ଆର୍ଆଇ- ତହସିଲଦାର୍ , ପୋଲିସ୍ -ଚୌକିଦାର୍ ରୂପରେ ଥିବା ଓଡ଼ିଶା ସରକାର-ଭାରତ ସରକାରଙ୍କ ଶୋଷଣ ବିରୁଦ୍ଧରେ ଚାଷୀ ମୂଲିଆ ସମିତିର ଲାଲ୍‌ପତକା ଗାଁ ଖୁଂଟମାନଙ୍କରେ ଶୋଭା ପାଇଲା । ଆଦିବାସୀ

---

** ଆଗରୁ ବର୍ଣ୍ଣିତ ସମାନ କାରଣରୁ ତାଙ୍କ ସ୍ତ୍ରୀ ଗୋହିବଂଧା ର ଝିଅ ହୋଇଥିବାରୁ ,ତାଙ୍କ ନାମ ଗୋହିଙ୍ଗାଲୁ ।*

ଅଂଚଳରେ ସରକାର ବୋଇଲେ ଲୋକେ ଏଇ ମାନଙ୍କୁ ବୁଝି ଆସିଛନ୍ତି । ଭୋଟ ନିଅନ୍ତି ଇନ୍ଦିରା ମାଆ , ବିଜୁ ବାବା , ରାଜୀବ ବାବା , ସୋନିଆ ମାଆ ନହେଲେ ନବୀନ-ବାଜପେଈ ମାନେ । ତାଙ୍କର ହାତ, ଗୋଡ଼ , ମେଣ୍ଢା ,ଛେଳି , ଫୁଲ , ଫଳ ଚିହ୍ନମାନେ । ହେଲେ ଶାସନ ଶୋଷଣ ଚାଲେ ଗାର୍ଡ୍ର-ଅମିନ-ଚୌକିଦାର ଦେଇ । ଘରେ ଗାନ୍ଧୀ-ନେହେରୁ-ଇନ୍ଦିରା ମା-ବିଜୁ ବାବାଙ୍କ ଫଟୋ ମାରିଥିବା ମଦ ସାହୁକାର , ସୁଧ ସାହୁକାର - ବ୍ରାହ୍ମଣ , କୁମୁଟି , ସୁଣ୍ଡି ସାହୁକାରମାନଙ୍କ ଦେଇ । ଏ ଦୁଇ ଗୋଷ୍ଠି ମଧରେ ଥିବା ସଂପର୍କ ଲୋକେ ବୁଝି ପାରୁ ନଥିଲେ । ଏମାନଙ୍କ ଶୋଷଣ ଭେଦ ଉପରେ ସଂଗଠନ ବୈଠକରେ ଆଲୋଚନା ହେଉଥିଲା । ଏ ସବୁ ଦାସୁଙ୍କ ମନକୁ ଛୁଇଁଲା । ଅପାଠୁଆ କୁଇ ଲୋକଙ୍କ ପାଖରେ ଏ ବିପ୍ଳବୀ ପ୍ରଚାର କିପରି ପହଁଚା ଯାଇପାରିବ ? ଏ ବିଷୟରେ ଭାବିଭାବି ବୈଠକ ଶେଷରେ ଦାସୁ ପଚାରିଲେ - କ'ଣ ମୁଁ ଏ ସବୁ ବିଷୟରେ ଆମ ଭାଷାରେ ଗୀତ ଲେଖି ପାରିବି ? ଗୀତ ହିଁ ଆମ ଲୋକ ସହଜରେ ବୁଝି ପାରିବେ । ସଂଗଠନ ନେତାମାନଙ୍କ ଠାରୁ ଆସ୍ତି ସୂଚକ ଉତ୍ସାହ ପାଇ ଭଜନ ଓ ବାହାଗୀତ ବଦଳରେ ଦାସୁ ଲେଖିଲେ ପ୍ରଥମ ବିପ୍ଳବୀ କୁଇ ଗୀତ **'ତ୍ତାକୁ ମାରୁ ହାବେ ତାସ୍ସୁ ନେଂଜୁ ରଣ୍ଡାଆନା, କୁଇ ଦିନା ନିପୋନ ବାଗା ମାରୁ କାମା କିନା '** । ଅର୍ଥାତ, ଆସ ଆମେ ସମସ୍ତେ ଏକ୍ ହେବା ; କୁଇ ଅଂଚଳକୁ ରକ୍ଷା କରିବା ପାଇଁ କାମ କରିବା । *କୁଇ ଆଦିବାସୀଙ୍କ ପ୍ରାଚୀନ ଉତ୍ପାଦନ ପଦ୍ଧତି-ଶୀକାର ଓ ଖାଦ୍ୟ ସଂଗ୍ରହ ସୃଷ୍ଟି କରିଥିଲା ପ୍ରଥମ କୁଇ ଗୀତ । ଶୀକାର ଟିଏ ପାଇ ଖୁସିରେ ନାଚୁ ନାଚୁ କେଉଁ ଅଜଣା କୁଇ କବିଟିଏ ଗାଇଥିଲା ପ୍ରଥମ ଅଲିଖିତ କୁଇ ଗୀତ । ବିଂଶ ଶତାବ୍ଦୀର ଶେଷ ଭାଗରେ କୁଇ ଲୋକଙ୍କ ବିପ୍ଳବୀ ସଂଗ୍ରାମ ସୃଷ୍ଟି କଲା ବିପ୍ଳବୀ କୁଇ ସଂଗୀତକୁ ଓ ପ୍ରଥମ ବିପ୍ଳବୀ କୁଇ କବି ଦାସୁରାମ କୁ ।*

ନିଜ ଭାଷଣ ଓ ଗୀତ ଜରୀଆରେ ଦାସୁ ସରଳ ଭାବେ ବୁଝାଇ ଦେଲେ ଆଦିବାସୀ ଅଂଚଳର ଶୋଷଣ ଭେଦ । ସାମ୍ରାଜ୍ୟବାଦ ଓ ତାହାର ଦଲାଲ୍ ପୁଁଜିବାଦ ଓ ଜମିଦାର-ସାହୁକାର ମାନଙ୍କ ଶୋଷଣ ନେଇ ଗୀତ ଲେଖିଲେ । ଆମେ ସତରେ ସ୍ୱାଧିନ କି ନୁହଁ , ଏ ଦେଶରେ ଗଣତନ୍ତ୍ର ଚାଲିଛି ନାଁ ପୁଁଜିପତି-ଜମିଦାରଙ୍କ ଏକଛତ୍ରବାଦ ଚାଲିଛି. ଏ ସବୁ ନେଇ ତାଙ୍କ କଲମ ଚଳାଇଲେ । ଭୋଟ୍ ରାଜନୀତିର ଅସଲ ମୁଖା ଖୋଲିଦେଲେ । ଶହୀଦ୍ ମାନଙ୍କ ଲଢେଇ ଓ ଆତ୍ମବଳିଦାନର କାହାଣୀ ପ୍ରଚାର କଲେ । ନକ୍ସଲବାଦୀ ଆନ୍ଦୋଳନ ଓ ଅନ୍ୟ ପ୍ରଗତିଶୀଳ ଆନ୍ଦୋଳନ ବିଷୟରେ ଲୋକଙ୍କୁ ସଚେତନ କଲେ । ଗୀତ ଜରୀଆରେ ସେ ନିଜ ଲୋକମାନଙ୍କ ମଧରେ ସୃଷ୍ଟିକଲେ ଭାଷା ପ୍ରେମ । ମଦ ସାହୁକାରଙ୍କ ଉତ୍ପାତ୍ ବିରୁଦ୍ଧରେ ସଂଗ୍ରାମ ହେଲା , ପୁଣି ଗୀତ ଲେଖା ହେଲା । ଅପହୃତ

ଆଦିବାସୀ ଜମି ପାଇଁ ଆଦିବାସୀଙ୍କ ଆନ୍ଦୋଳନ ଚାଲିଲା । ଡାବରକଣା ରେ ସୁଣ୍ଡି ସାହୁକାରଙ୍କ ଶୋଷଣ ଅତ୍ୟାଚାର , ହାରୁମାରେ ଜିନୁଙ୍ଗା ମାଝୀ ର ଅପହୃତ ଜମିକୁ କେନ୍ଦ୍ରକରୀ ଆଦିବାସୀ ମେଳି , ମାନ୍ଦ୍ରାଓ୍ୱାଜୁ- ରାବା-ଲାମ୍‌ନାଜୁ-ଗୁଡ଼ିପଙ୍କା-ହିଂଜମ-ଲୟଙ୍ଗାଗ - ଜାଙ୍ଗୁଡ଼ି-ଲୁଦିଙ୍ଗ୍-ତାବରସାହି-ଲାଟିଙ୍ଗ୍-ନୂଆଗାଁ ଆଦିର ଅପହୃତ ଆଦିବାସୀ ଜମି ନେଇ ଆଂଦୋଳନ ଜୋର୍ ଦାର ହେଲା । ଉଦୟଗିରୀ ଆଦିବାସୀ ମେଳି ହେଲା - ଦୁଇ ଡକାୟତ ଜୟା ଓ ତ୍ରିଶଙ୍କୁ କୁ ହଜାର ହଜାର ଲୋକ ଜେଲ ମଧରେ ପଶି ମାରିଦେଲେ । ଗୁଡାରୀ ଅଂଚଳରେ ଏକକାଳିନ ୩୨ ଟି ଗାଁରେ ହଜାର ହଜାର ଲୋକଙ୍କର ଜମି ଆଂଦୋଳନର ଜୁଆର ସୃଷ୍ଟି ହେଲା । ତା'ର ପ୍ରତିଧ୍ୱନି ମଧ ଶୁଭିଲା ପଦ୍ମପୁରର ଶରଧାପୁର ଓ ଗୁଣୁପୁରର ଟିଟିମିରି ଅଂଚଳରେ । ସେ ସବୁ ଉପରେ ଦାସୁଙ୍କ କଲମ ନୂଆ ନୂଆ ସଂଗୀତ ସୃଷ୍ଟି କଲା । ଜଙ୍ଗଲ ବିଭାଗ - ରାଜସ୍ୱ ବିଭାଗ- ସରକାରୀ ପ୍ରଶାସନର ଶୋଷଣ ଜୁଲମ ବିରୋଧ୍ଧି ଆନ୍ଦୋଳନ ଗଢ଼ିଉଠିଲା । ଏ ସବୁ ଲଢେଇରେ ଦାସୁ ସାଜିଲେ ଅନ୍ୟତମ ସାରଥି । ସେ ଚାଷୀ ମୂଲିଆ ସମିତିର ଅନ୍ୟତମ ଆଗଧାଡ଼ିର ନେତା ବନିଯାଇଥିଲେ । ଲୋକଙ୍କ ସମସ୍ୟା ଓ ଆନ୍ଦୋଳନର ଡାକରାକୁ ସେ କୁଇ ଭାଷାରେ ଗୀତ ରଚନା କରି ଗାଁ ଗାଁରେ ଗାଇ ବୁଲୁଥିଲେ । ଏହିପରୀ ଶୋଷକମାନଙ୍କ ବିରୁଦ୍ଧରେ ଚାଲିଥିବା ଲଢେଇ କୁ ଦାସୁ ଆହୁରୀ ଶକ୍ତିଶାଳୀ କରୁଥିଲେ । କ୍ରମେ ସେ ପାଲଟି ଯାଇଥିଲେ ଚାଷୀ ମୂଲିଆ ସମିତିର ଡିଭିଜିନାଲ୍ କମିଟି ଆବାହକ ଓ ଗଣ ନାଟ୍ୟ ମଂଚର ପ୍ରମୁଖ । ଏହି ଦାୟିତ୍ୱରେ ଥିବାବେଳେ ତାଙ୍କର ଛଦ୍ମ ନାମ ଥିଲା ଜୟରାମ ମାଝୀ । ୧୯୯୮ ଡିସେମ୍ବର ୮ର ଉଦୟଗିରୀ ଆଦିବାସୀ ମେଳି ପରେ ଚାଷୀ ମୂଲିଆ ସମିତି ଉପରେ ସରକାରୀ କଟକଣା କୁ ଏଡ଼ାଇବା ପାଇଁ ସେ ଅର୍ଦ୍ଧ ଭୂମିଗତ ରହି କାମ କରୁଥିଲେ । ପରିବାରର କରୁଣ ଆର୍ଥିକ ଅବସ୍ଥା ଏଭଳି ଦାୟିତ୍ୱ ନେବାରୁ ତାଙ୍କୁ ଅଟକାଇ ପାରିନଥିଲା ।

ଦାସୁଙ୍କର ପ୍ରଥମ ଗୀତ ଏତେ ଜନପ୍ରୀୟ ହେବ ବୋଲି ଦାସୁ ନିଜେ ମଧ ଭାବି ନଥିଲେ । ସାହୁକାରମାନଙ୍କ ମିଛ କେଶ୍ ଓ ଷଡ଼ଯନ୍ତ୍ର ଯୋଗୁଁ ଜେଲ୍ ରେ ବଂଦୀଥିବା ୧୧ ଜଣ ସାଥିଙ୍କ ମୁକ୍ତି ଦାବିକରି ୧୯୯୬ରେ ରାୟଗଡା ସହରରେ ଅନୁଷ୍ଠିତ ଏକ ହଜାରରୁ ଊର୍ଦ୍ଧ୍ୱ ଲୋକଙ୍କ ବିକ୍ଷୋଭ ସମାବେଶ ରେ ଦାସୁଙ୍କ ସଂଗୀତ ଦଳ ପ୍ରଥମେ ଏ ଗୀତ ଗାଇଥିଲା । ଏ ଗୀତର ଜନପ୍ରୀୟତା ଦାସୁଙ୍କୁ ଆହୁରୀ ଉତ୍ସାହ ଦେଲା । ଦାସୁଙ୍କ କାର୍ଯ୍ୟକଳାପ ନୂନୁ ସମେତ ଅନ୍ୟାନ କୁଇ ଭାଷା ପ୍ରେମୀ ଓ କବିମାନଙ୍କୁ ସଂଗଠନ ମଧକୁ ଟାଣି ଆଣିଲା । ପ୍ରଥମେ ପ୍ରଥମେ ସେ ଚଳଚ୍ଚିତ୍ର ସଂଗୀତ ସ୍ୱରରେ ଗୀତ ଲେଖୁଥିଲେ । ସଂଗଠନ

ମଧ୍ୟରେ ଆଲୋଚନା ପରେ , ଦାସୁ ଓ ତାଙ୍କ ସାଥିମାନେ ଖୋଜି ଚାଲିଲେ ଆଦିବାସୀର ପୁରୁଣା ଲୋପ ହୋଇଥିବା ଗୀତ ର ସ୍ୱରକୁ । ଖ୍ରୀଷ୍ଟିଆନ୍ ପ୍ରଚାରକଙ୍କ ଅଯୌକ୍ତିକ ପ୍ରଚାର ମଧ୍ୟଦେଇ ଝଂଜଣୀ ବାଜା ଓ ଏହି ପୁରୁଣା ସ୍ୱର ଲୋପ ହୋଇଥିଲା । ଡ୍ରମ ବାଜାରେ ହିନ୍ଦି ଓ ଓଡିଆ ଚଳଚ୍ଚିତ୍ର ସଂଗୀତ କୁଇ ଗାଁ ମାନଙ୍କରେ ତା ସାମ୍ରାଜ୍ୟ ବିସ୍ତାର କରିଥିଲା । ଦାସୁ ଓ ତାଙ୍କ ସାଥିମାନଙ୍କ ବିପ୍ଳବୀ ଗୀତଗୁଡ଼ିକରେ ଏହି ଲୁପ୍ତପ୍ରାୟ ପୁରୁଣା ସ୍ୱର ଗାଁର ବୁଢ଼ାବୁଢ଼ି ପିଲା ସମସ୍ତଙ୍କୁ ଟାଣି ଆଣିଲା ଦାସୁଙ୍କ ଝଂଜଣୀ ପାଖକୁ । ସେମାନଙ୍କ ଆଖିରେ ଆନନ୍ଦର ଲୁହ , ହଜିଲା ସ୍ମୃତିର ଲୁହ ଜକେଇ ଆସିଲା । ଗୋଟିଏ ଦାସୁ ସୃଷ୍ଟି କଲା ଅନେକ ଦାସୁ । ଗାଁ ଗାଁରେ ଚାଲିଲା ବିପ୍ଳବୀ ଗୀତ ଗାଇବା ଓ ଲେଖିବାର ପ୍ରତିଯୋଗିତା । ପିଲା ମାନେ ଗାଁ ଦାଣ୍ଡରେ ଖେଳିଲା ବେଳେ , *ବଗଡ଼ରେ ଚଢ଼େଇ ଘଉଡ଼ାଇଲା ବେଳେ , ସେମାନଙ୍କ ମୁହଁରେ ଶୁଣିବାକୁ ମିଳିଲା ଦାସୁ ଓ ତାଙ୍କ ସାଥିମାନଙ୍କ ବିପ୍ଳବୀ ଗୀତସବୁ .......ଓ୍ୱାଦୁ ମାରୁ ହାବେ ତାସୁ ..... , ଗଜପତି ଜିଲ୍ଲା ତାଡ଼େ ସୁନା ..... , ଭୋଟ୍ ହିଆଃସୁଡ଼େ ତଡ଼େ...... , ମାଜିଗୁଡ଼ା ମାହ୍ରାଓ୍ୱାକୁ ......., ନକିଟେଏ ଏମ୍ଭେ ମାଚେ ....... , ଡ଼ାକୁ ମାଜି ଡ଼ିକ୍ତେରାଲେ ନେଂଲୁଡ଼େ ...... ଆଦି । ଆଦିବାସୀ ମାଆ ମାନଙ୍କ ଧାନ କୁଟା ଶୈଳିକୁ ଅନୁକରଣ କରି ବାଲିକୁ ଠେଙ୍ଗାରେ କୁଟି କୁଟି ଖେଳିଲା ବେଳେ , ଗାଁ ଦାଣ୍ଡରେ ଛୋଟ ଛୋଟ ଝିଅ ପିଲା ମାନେ ଗାଇଲେ... ଚାରୁ ମଜୁମ୍‌ଦାର ନିଙ୍ଗେ ପାଟୁ ଜୁହାରୀ ..... , ମାଓ ପାହାରୀ ମା ପାହାରୀ ..... , ବାଡ଼ାଦାଲା କିନାସାଡେ ଗାଡ଼ିଦାଲା କିନାଡ଼େ..... । ସଳପ ଗଛ ମୂଳେ ବୁଢ଼ା ବୁଢ଼ୀ ମାନେ ପୁଣି ଚଳାଇଲେ ତାଙ୍କ କୁଇ ସାଂସ୍କୃତିକ ଗବେଷଣା ଗାର । ତିଆରୀ ହେଲା ନୂଆ ନୂଆ ଢେଙ୍କା , ବଇଁଶି ,ଗୋଧୀ ଛାଲର ଝଂଜଣୀ । ମଦଖାଇଥିବା କୁଇ ଲୋକମାନେ ରାସ୍ତାରେ ପଡୁ ପଡୁ ଗାଇଲେ .. କାଲୁ ଉଣ୍ଡା ନାହି ଲକୁ ନାହେଟ୍ ଆଟେରୀ (ଅର୍ଥାତ୍ , ମଦଖାଇ ଲୋକ ଖରାପ ହେଉଛି ......) । ସଳପ ଗଛମୂଳ ପାଲଟି ଗଲା ରାଜନୈତିକ କାର୍ଯ୍ୟାଳୟ । ସେଇଠି ପ୍ରସ୍ତୁତ ହେଲା ମାଝିଗୁଡ଼ା ପୋଲିସ୍ କ୍ୟାମ୍ପ ଉପରେ ଆକ୍ରମଣ ପାଇଁ ସ୍ୱତଃସ୍ଫୂର୍ତ ଯୋଜନା ,ନେଡିଂପଦରରେ ପୋଲିସ୍ କ୍ୟାମ୍ପରୁ ହତିଆର ଛଡାଇବା ଯୋଜନା । ସମଗ୍ର ଅଂଚଳରେ ସୃଷ୍ଟି ହେଲା ଏକ ବିପ୍ଳବୀ ସାଂସ୍କୃତିକ ଜାଗରଣ । ଯେଉଁ ଲଢେଇ ଯୋଗୁଁ ଆଦିବାସୀ ତା ଜମି ,ଜଂଗଲ ଉପରେ ଅଧିକାର ସାବ୍ୟସ୍ତ କଲା , ସାହୁକାର-ସରକାର ର ଅତ୍ୟାଚାର ରୁ ନିଜକୁ ଟିକିଏ ମୁକାବିଲାରେ ସକ୍ଷମ ହେଲା , ସେହି ସଂଗ୍ରାମର ଗୀତ ଆଦିବାସୀ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ପ୍ରତିଧ୍ୱନିତ ହେଲା ।

ଆଗରୁ କୁଇ ଲୋକଙ୍କୁ ଅଣ ଆଦିବାସୀ ଲୋକମାନେ କଂଧ ବୋଲି କହୁଥିଲେ ।

---

*ପାହାଡ଼ ରେ ଗଛକାଟି ତିଆରୀ ହୋଇଥିବା ଅସ୍ଥାୟୀ ଚାଷ କ୍ଷେତ୍ର କୁ ବଗଡ଼ କୁହାଯାଏ ।

ତାଙ୍କଠୁ ଶିଖି ଶିଖି କୁଇ ଲୋକ ମଧ ନିଜକୁ କନ୍ଧ କହୁଥିଲା । ଆଜି ବି ଫୁଲବାଣୀ ଜିଲ୍ଲା କୁ କଂଧମାଳ କୁହାଯାଉଥିବାରୁ କେତେ କୁଇ ଖୁସି ଓ ଗର୍ବ ଅନୁଭବ କରୁଛନ୍ତି । ଯଦିବା କୁଇମାନେ ସବୁବେଳେ ନିଜ ଭାଷାରେ ନିଜକୁ କୁଇ ବୋଲି କହିଥାନ୍ତି । ସଂଗଠନର ନିଷ୍ପତିରେ ପ୍ରଚାର ଚାଲିଲା କୁଇର ଇଜ୍ଜତ ପାଇଁ । କଂଧ ନୁହେଁ ଆମେ କୁଇ । ଦାସୁ ଏଭଳି ପ୍ରଚାରର ଆଗ ଧାଡ଼ିରେ ରହିଲେ । କ୍ରମେ କଂଧ ଶବ୍ଦ ବିପ୍ଳବୀ ଅଂଚଳରୁ ଲୋପ ହୋଇଗଲା । ରାୟଗଡା, ଗଜପତି ଓ ଫୁଲବାଣୀ ସମେତ ସମଗ୍ର କୁଇ ଅଂଚଳରେ ସଂଗଠନ ପ୍ରସାର କରିବା ସହ କୁଇ ଭାଷା ଆଂଦୋଳନ ଚଳାଇବାକୁ , ଦାସୁ ତାଙ୍କ ପ୍ରଥମ ଗୀତରେ ହିଁ ଆହ୍ୱାନ ଦେଇଥିଲେ । ଓଡିଆ ଲିପିରେ କୁଇ ଭାଷାକୁ ଠିକ୍ ଭାବେ ଲେଖାଯାଇ ପାରୁନି , ଏଥିପାଇଁ ଏକ ଲିପିର ଆବଶ୍ୟକତା ବିଷୟରେ ସବୁବେଳେ ଦାସୁ ଚିନ୍ତା କରୁଥିଲେ । ଏ ନେଇ ଆଲୋଚନା ବି କରୁଥିଲେ ।

ଏକାଧାରାରେ ଜନ ଆନ୍ଦୋଳନର ପ୍ରିୟ ନେତା ଓ ଜନକବି ପାଲଟିଥିବା ଦାସୁରାମ , ସତରେ ପାଲଟି ଯାଇଥିଲେ ରାୟଗଡା -ଗଜପତି ଲୋକଙ୍କ ସୁଖଦୁଃଖ ର ସାଥି । ଅନ୍ୟପଟେ , ଶୋଷକ ସରକାର ପାଇଁ ସେ ପାଲଟି ଯାଇଥିଲେ ଏକ ବିପ୍ଳବୀ ଆତଙ୍କ । ଯେଉଁଥିପାଇଁ , ଆନ୍ଧ୍ରର କୁଖ୍ୟାତ ଗ୍ରେହାଉଣ୍ଡସ୍ ପୋଲିସ୍ ସହାୟତାରେ ଓଡ଼ିଶା ସରକାର ଦାସୁରାମଙ୍କୁ ୨୦୦୩ ମସିହାରେ ରାୟଗଡ଼ା ସହରରୁ ପରିଶ୍ରା ବସିଥିବା ଅବସ୍ଥାରେ ଆଖିରେ ପଟି ବାନ୍ଧି ଅପହରଣ କରିନେଇଥିଲା । ସେମାନେ ନେଲା ବେଳେ ଦାସୁରାମଙ୍କ ପାଖରେ ଏକ ଗୁରୁତ୍ୱପୂର୍ଣ୍ଣ ଚିଠି ଥାଏ । କୌଶଳ କ୍ରମେ ନାଟକୀୟ ଭଙ୍ଗିରେ ନିଜ ଦେହ କୁଣ୍ଡାଇବା ବାହାନା କରି ଦାସୁ ସେ ଚିଠିଟି ଫିଙ୍ଗି ଦେଲେ । ଆନ୍ଧ୍ର ପୋଲିସ୍ ତାଙ୍କୁ ଘୋର ନିର୍ଯ୍ୟାତନା ଦେଇ ମଧ ତାଙ୍କ ମୁହଁରୁ ବିପ୍ଳବୀ ଆନ୍ଦୋଳନକୁ କ୍ଷତି କଲାଭଳି ପଦୁଟିଏ ସୂଚନା ପାଇପାରିନଥିଲା । ପ୍ରତିଦିନ ତାଙ୍କୁ ପିଟି ପିଟି ପୋଲିସ୍ ମାନେ କାଠର ବାଡ଼ି ଗୁଡ଼ିକ ଭାଙ୍ଗି ଦେଉଥିଲେ । ଅଥଚ ବିପ୍ଳବୀ ଦାସୁରାମଙ୍କୁ ନୁଆଁଇ ପାରିନଥିଲେ । ତାଙ୍କୁ ୧୬ ଦିନ ଧରି ଆନ୍ଧ୍ରର ବିଭିନ୍ନ ଗୁପ୍ତ ନିର୍ଯ୍ୟାତନା ଶିବୀରରେ ମାଡ଼ ନିର୍ଯ୍ୟାତନା ଦିଆଯାଇଥିଲା । ବିଭିନ୍ନ ମିଛ ମକୋଦମାରେ ତାଙ୍କୁ ୧୬ ମାସ ଜେଲ୍‌ରେ ରଖାଯାଇଥିଲା । ସେ ବିଷୟରେ ଦାସୁ ତାଙ୍କ ୧୬ ମାସ ଜେଲ୍ ଜୀବନ କଥାରେ ବିଷଦ ଭାବେ ଲେଖିଛନ୍ତି । ତେଣୁ ମୁଁ ଆଉ ସେ ବିଷୟରେ ଲେଖିବା ଉଚିତ୍ ମନେ କରୁନି ।

ତେବେ ଗୋଟିଏ କଥା ହେଉଛି , ସୁନାକୁ ନିଆଁରେ ପକାଇ ପିଟିଲେ ତା'ର ଉଜ୍ଜ୍ୱଳତା ଆହୁରୀ ବଢ଼ିଯାଏ । ସେହିପରି ମାଡ଼ ଜେଲ ଦଣ୍ଡ ପ୍ରକୃତ ବିପ୍ଳବୀଙ୍କୁ ମଧ ଚିହ୍ନିତ କରିଦିଏ । ମାଡ଼ ଜେଲଦଣ୍ଡରେ ବିପ୍ଳବୀ କବି ଦାସୁରାମ ଭାଙ୍ଗି ନପଡ଼ି , ଜେଲ ମଧରେ

ବନ୍ଦୀ ସାଥି ମାନଙ୍କୁ ସଂଗଠିତ କରିଥିଲେ । ଭାଙ୍ଗି ପଡିଥିବା ସାଥିମାନଙ୍କୁ ପୁଣି ଉତ୍ସାହ ଦେଲେ । ସମସ୍ତଙ୍କୁ କୁଇ ଲିପି ଶିଖାଇବା ସହ ପୁଣି ଜେଲରୁ ବାହାରିଲେ କିପରି ଲଢ଼େଇ କରିବାକୁ ହେବ , ଏହା ପ୍ରବର୍ତାଉଥିଲେ । ମାନ୍ଦ୍ରାଓ୍ୱାଜୁର ନୂଡୁ , ଲୁଦିଙ୍ଗ୍ ଯାକବ , ଜାଙ୍ଗୁଡ଼ି ଶରତ ଓ ପିତର, କଡ଼କଡ଼ମହା ନୂନୁ , ନିଧିଗୁଡ଼ି ଜୁନେଶ ଓ ତାଓ୍ୱାରସାହି ଉଲ୍ଲାସଙ୍କ ସମେତ ଅନେକ ସାଥୀ ଜେଲ୍ ରେ ଥାଆନ୍ତି । ସେ ସମସ୍ତଙ୍କ ସହ ଆଲୋଚନା କଲେ , ସେମାନଙ୍କୁ ସଂଗଠିତ କଲେ । ଜେଲ ମଧରେ ବନ୍ଦୀ ଥିବା ବୁଢ଼ା ବୁଢ଼ୀ କୁଇ ଲୋକଙ୍କ ସହ ଭାଷା ଉପରେ ଆଲୋଚନା କଲେ । ବଂଦୀ ଜୀବନ କାଳରେ ସେ ସୃଷ୍ଟି କଲେ କୁଇ ଭାଷାର ଲିପି । ଦାସୁଙ୍କ ଗିରଫ୍ ବିରୁଦ୍ଧରେ ରାଜ୍ୟର ବୁଦ୍ଧିଜୀବି ମହଲ ତୀବ୍ର ପ୍ରତିକ୍ରିୟା ପ୍ରକାଶ କଲା । ଜେଲ ଭିତରେ ଥିବା ସମୟରେ , ପୁଣି ଜାମିନୀରେ ଖଲାସ ହେବା ପରେ , ତାଙ୍କ ଉପରେ ଆନ୍ଧ୍ର- ଓଡ଼ିଶା ସରକାର କରିଥିବା ଦମନ ନିର୍ଯ୍ୟାତନାର କୁତ୍ସିତ ରୂପକୁ ଦାସୁରାମ ଲୋକଲୋଚନକୁ ଆଣିଥିଲେ । ଖଲାସ ହେବା ପରେ ସେ ଦଶଗୁଣା ଉତ୍ସାହ ନେଇ ଜନସଭାର ନେତୃତ୍ୱ ନେଲେ , ଦେଶସାରା ବୁଲି ତାଙ୍କର ସାଂସ୍କୃତିକ ଦଳ ସାହାଯ୍ୟରେ ବିପ୍ଳବୀ ଗୀତନାଚ ପରିବେଷଣ କରିବାରେ ଲାଗିଲେ ।

**ସଂଗଠନ ମଧ୍ୟରେ ଦୁଇଧାରା ସଂଗ୍ରାମରେ ଦାସୁ :**

୧୯୯୮ର ଆର୍-ଉଦୟଗିରୀ ଆଦିବାସୀ ମେଳି ପରେ ଯେତେବେଳେ ସରକାରୀ ଦମନରେ ଭୟ ପାଇ କିଛି ସଂଗଠନ ନେତା ସଂଗଠନରେ ବିଭାଜନ କରି ଭୋଟପନ୍ଥୀ ପାଲଟିଯାଇଥିଲେ , ସେତେବେଳେ ଦାସୁରାମ ସଂଗ୍ରାମୀ ସାଥିମାନଙ୍କ ସହ ମିଶି ଆନ୍ଦୋଳନର ଏକତା ବଜାୟ ରଖିବା ପାଇଁ ଦୃଢ଼ ଭାବେ ଠିଆ ହୋଇଥିଲେ । ସେ ନିଜେ ଚାଷୀ ମୂଲିଆ ସମିତିର ଆବାହକ ଦାୟିତ୍ୱ ନେଇଥିଲେ । ସେହି ରାଗରେ , ୧୯୯୯ ମାନ୍ଦ୍ରାବାଜୁ ଗୁଳିକାଣ୍ଡ ପରେ ଏହି ଭୋଟପନ୍ଥୀମାନେ ଦାସୁରାମଙ୍କ ନାମରେ ନାନା ମିଥ୍ୟା ଅପପ୍ରଚାର ଚଳାଇଥିଲେ । ଦାସୁରାମଙ୍କ ମୃତ୍ୟୁପରେ ମଧ ସେମାନେ ଦାସୁଙ୍କ ନାମରେ କଳଙ୍କ ଲଗାଇବାକୁ ଛାଡୁନାହାନ୍ତି । ଦାସୁ କୁଆଡ଼େ ଆତ୍ମସମର୍ପଣ କରିବାକୁ ଚାହୁଁଥିଲେ ବୋଲି ଏମାନେ ଗୁଜବ ସୃଷ୍ଟି କରୁଛନ୍ତି । ତାଙ୍କ ଉପରେ ରାଗର କାରଣ , ସରକାରୀ ଚାମଚା ଏହି ଭୋଟପନ୍ଥୀଙ୍କ ସଂଗଠନ ଭାଙ୍ଗିବା ଚକ୍ରାନ୍ତକୁ ପଣ୍ଡ କରିବାରେ ଦାସୁରାମଙ୍କର ଉଲ୍ଲେଖନୀୟ ଭୂମିକା ଥିଲା ।

**ଦାସୁରାମ ମଳିକ ରୁ ଭାଷାବିତ୍ ଦାସୁରାମ ମାଲେକା :**

ଆଗରୁ ଙଂଧ ଅପବାଦ ରୁ କୁଇ ଲୋକଙ୍କୁ ଉଦ୍ଧାର କରିବାରେ ସଫଳ ହୋଇ ଥିବା ଦାସୁରାମ ମଳିକ , ଜେଲ୍ ରୁ ବାହାରିଲା ବେଳକୁ ନିଜ ନାଁ ସଂଶୋଧନ କରି ଦାସୁରାମ

ମାଲେକା ବୋଲି ଘୋଷଣା କଲେ । ଏଭଳି କରିବା ପଛରେ ତାଙ୍କର ଗଭିର ଭାଷା ଗବେଷଣା ପ୍ରେରଣା ଦେଇଥିଲା । ବନ୍ଦୀ ସାଥି ଓ ବୟସ୍କ କୁଇ ଲୋକଙ୍କ ସହ ଆଲୋଚନା ରୁ ସେ ସ୍ପଷ୍ଟ ହେଲେ ଯେ , ଆଦିବାସୀ ଙ୍କ ନାମରେ ସାଂଗିଆ ନଥାଏ । ପ୍ରଥମେ ପ୍ରଥମେ ସରକାରି ସର୍ଭେ ପାଇଁ ଆସିଥିବା ଓଡ଼ିଆ ଓ ତେଲେଗୁ କର୍ମଚାରୀ ମାନେ ଜବରଦସ୍ତି ଗୋଟେ ସାଂଗିଆ 'ଯୋଡି ଦିଅନ୍ତି । କୁଇ ଲୋକ କୁ ସେମାନେ କଂଧ ଓ ସରା ଲୋକଙ୍କୁ ଶବର କହୁଥିବାରୁ , କାହା କାହା ନାମରେ କଂଧ ଓ ଶବର ସାଂଗିଆ ଲେଖିଛନ୍ତି । ଧନୀ ଲୋକକୁ କୁଇ ମାନେ କେଉଁଠି ମାଜି , ପାତେରା ଓ ସରା ମାନେ ଗମାଙ୍ଗ କହିଥାନ୍ତି । ଏଥିପାଇଁ କେତେ କୁଇଙ୍କ ସାଂଗିଆ ମାଝୀ , ପାତେରା ହୋଇଥିବା ବେଳେ, କେତେ ସରା ଲୋକଙ୍କ ସାଂଗିଆ ଗମାଙ୍ଗ ରଖାଯାଇଛି । ସେହିପରି ଗରିବ ଲୋକ ବା ସାଧାରଣ ଚାଷୀଙ୍କୁ କୁଇରେ ମାଲେକା କୁହାଯାଏ । ସେହି ମାଲେକା କୁ ଅପଭ୍ରଂଶ କରି ଓଡ଼ିଆ ସାଂଗିଆ ସହ ତାଳ ଦେଇ ଲେଖାଯାଇଛି ମଳିକ । କୁଇ-ସରା ଲୋକର ସବୁ ବଦଳି ଯାଇଛି । ତା ଗାଁ ର ନାଁ ବଦଳି ତାବରକଣା ଟା ନାରାୟଣପୁର , ପଣ୍ଡଗାଡ଼ା ଟା ଚନ୍ଦ୍ରପୁର , କାମ୍ପଗୁଡ଼ା ଟା ଗୁଣୁପୁର, ଜୁମୁରୁଗୁଡ଼ା ଟା ପଦ୍ମପୁର , ପିପେଲଗୁମା ଟା ହନୁମନ୍ତପୁର , ଗୁଡେଡ଼ ଟା ଗୁଡାରୀ ହୋଇଯାଇଛି । ତା ମାଛ ଧରା ଜାଗା , *ମିନ୍‌ଗା ଜାର୍ଲା (ମାଛ ଖାଲେଇ)କୁ ଗୁଡାରୀ ର ଉଡ଼ା ଚଢେଇ କୁମୁଟି ବ୍ରାହ୍ମଣମାନେ ଶିବଙ୍କ ବାସସ୍ଥଳି ଓ ତିର୍ଥ ସ୍ଥାନ କହି ମୀନାଝୋଲା କରିଦେଇଛନ୍ତି । ଏନେଇ ଆଗରୁ ସଂଗଠନ ପ୍ରତିବାଦ କରି ଆସିଛି । ସାଂଗିଆ ବିଷୟ ମଧ ସଂଗଠନରେ ଆଲୋଚନା ହେଉଥିଲା , ମାତ୍ର ପ୍ରତିବାଦ ପ୍ରତିରୋଧ ହୋଇନଥିଲା । ଦାସୁ ସେ ପ୍ରତିରୋଧ ର ଶୁଭ ଦେଲେ , ନିଜ ନାଁ ରୁ । ନିଜକୁ ସେ ଦାସୁରାମ ମାଲେକା ଭାବେ ଘୋଷଣା କଲେ ।

ତାଙ୍କ ଭାଷା ଗବେଷଣା ଏଇଠି ଅଟକିଗଲା ନାହିଁ । ଚାଲିଲା କୁଇ ଲିପି ସୃଷ୍ଟି ର ପ୍ରୟାସ । ଇତିହାସ କହେ , ଦେବନାଗରୀ ଲିପିରେ ଲେଖା ଯାଇଥିବା ପୁରାଣ କୁ ଅନୁବାଦକରି , ଦେବନାଗରୀ ଲିପିରେ ଓଡିଆ ପୁରାଣ ଲେଖିବାର ଚେଷ୍ଟା ରେ କିଛି ସମସ୍ୟା ଆସିଥିଲା । ତାଳପତ୍ର ଓ ଲୁହା କଂଟା ଲେଖନୀ ରେ ଦେବନାଗରୀ ଲିପିରେ ଲେଖିଲା ବେଳକୁ , ସିଧା ଗାର ଟାଣୁ ଟାଣୁ କଂଚା ପତ୍ର ଫାଟିଗଲା । ସେଇଠୁ ସୃଷ୍ଟି ହେଲା , ସିଧା ଗାର ବଦଳରେ ଦେବନାଗରୀ ଲିପିରେ ଟୋପି ପିନ୍ଧାଇବା ଓ ଙ୍ଗାଳ ଜୋଡ଼ିବା ଚେଷ୍ଟା । ସୃଷ୍ଟି ହେଲା ଓଡ଼ିଆ ଲିପି । ସେଇ ପ୍ରଥମ ଚେଷ୍ଟାର ସଂଶୋଧିତ ରୂପ ହେଉଛି ଆଜିର ଓଡ଼ିଆ ଲିପି । ସେଥିପାଇଁ ଓଡ଼ିଆ ଲିପି ତାହାର ନିଜସ୍ୱ ସ୍ୱତନ୍ତ୍ରତା

---

** ମୀନ୍‌ଗା ଅର୍ଥ ମାଛ , ମୀନ୍‌ଗା ଜାର୍ଲା ମାନେ ମାଛ ଗଦା*

ଦେଖାଇଲା । ଦେଖିବାକୁ ଦକ୍ଷୀଣ ଭାରତୀୟ ଭାଷାର ଲିପି ପରି ହୋଇଥିଲେ ବି , ତା ଉତ୍ପତି ଇତିହାସ ଅଲଗା । ଦାସୁଙ୍କ କୁଇ ଲିପିର ସେହିପରି ରହିଛି ସ୍ୱତନ୍ତ୍ର ଇତିହାସ । ଅନ୍ୟ ଆଦିବାସୀ ଭାଷା ପରି କୁଇ ଭାଷାରେ ବ୍ୟଂଜନବର୍ଣ୍ଣ ର ଦୀର୍ଘ ଲିପି ଗୁଡିକ , ଯଥା ଖ , ଘ , ଛ, ଝ ...... ଆଦି ର ପ୍ରୟୋଜନ ଯେ ନାହିଁ ; ଏକଥା ତ ଆଗରୁ ଦାସୁ ଜାଣିଥିଲେ । ଓଡ଼ିଆ ଲିପିରେ ଲେଖୁ ଲେଖୁ ସେ ଯେଉଁ ଉଚ୍ଚାରଣଗତ ସମସ୍ୟା ର ସାମନା କରିଥିଲେ , ସେଥିପାଇଁ ସ୍ୱତନ୍ତ୍ର ଲିପି ଯେ ଆବଶ୍ୟକ , ଏହା ସେ ଦୃଢ ଭାବେ ଅନୁଭବ କଲେ । ଅ୍ , ଇ୍ ,ଉ୍ ,ଏ୍...... ଆଦି ଲିପି ସହ ଅ , ଆ , ଇ. ଉ ,ଏ ଥିବା ଏକ ସ୍ୱତନ୍ତ୍ର ଲିପି ଦରକାର ଥିଲା । ଯେଉଁଥିରେ କି ଈ, ଐ , ଔ ଦରକାର ନାହିଁ । ଓଡ଼ିଆ ରେ ଡ , ଢ ଏବଂ ଡ଼ ,ଢ଼ ଅଛି ସତ । ମାତ୍ର ସାଧାରଣ ଉଚ୍ଚାରଣ ନିୟମ ଦୃଷ୍ଟି ରୁ ଲେଖା ରେ ପାର୍ଥକ୍ୟ ନଥିଲେ ବି ଚଳିବ , ଯଦିବା କିଛି ବ୍ୟତିକ୍ରମ ରହିଛି । ଶବ୍ଦ ର ଆରମ୍ଭ ରୁ ଡ ଥିଲେ ତାହା ଡ ଉଚ୍ଚାରଣ ହୁଏ । ମଝି ରେ ରହିଲେ ବା ଶେଷରେ ରହିଲେ ତାହା ଡ଼ ଉଚ୍ଚାରଣ ହୁଏ । ଯେମିତି ଡମ୍ବରୁ ଓ ଶଗଡ଼ । ମାତ୍ର କୁଇରେ ତ ଭିନ୍ନ କଥା । ଆରମ୍ଭ ରୁ ଡ଼ ଥିବ , ଡ ବି ଥିବ । ଡ଼ାକୁ - ଅର୍ଥାତ ଯାହା ମୁଣ୍ଡରେ ଆବୁ ଥିବ । ଏହି ନାଁ ଟିକୁ ବେଶି ଲୋକ ଓଡ଼ିଆ ରେ ଲେଖୁ ଲେଖୁ ଡାକୁ ବୋଲି ଲେଖି ଦିଅନ୍ତି । କୁଇ ରେ ଟିକିଏ ଏପଟ ସେପଟ ହେଲେ ଅର୍ଥ ଓଲଟା । *ହାନା /ସାନା - ଅର୍ଥ ଯିବା , ହା / ସା କୁ ଦୀର୍ଘ କରି ହାଆନା /ସାଆନା କହିଲେ , ତା ଅର୍ଥ ମରିବା । ଓଡିଆ ଲିପି ଦ୍ୱାରା କୁଇ ଲେଖାରେ ସମସ୍ୟା ଥିଲା ଅନେକ । ଅନେକ ସରକାରୀ ଗବେଷଣା କରୁଥିବା ଭାଷାବିତ୍ ଓଡ଼ିଆ ଲିପି ଉପରେ ଗାର ମାରି ଦୀର୍ଘ ଉଚ୍ଚାରଣଗତ ସମସ୍ୟା ସମାଧାନ କରିବାକୁ ନିଷ୍ଫଳ ଚେଷ୍ଟା କରିଥିଲେ । ଉଦାହରଣ ସ୍ୱରୂପ , କୁଇରେ ଅ୍ ଓ ଅ ଦରକାର ଥିବାବେଳେ , ସେମାନେ ଅ ଓ ଅଁ କୁ ବ୍ୟବହାର କରୁଥିଲେ । ଦାସୁ ଙ୍କ ଲିପି ହିଁ ଏହାର ପ୍ରକୃତ ସମାଧାନ ଆଣିଦେଲା । ଏମିତି ଦେଖିଲେ ,ଦାସୁ ତାଙ୍କ ଲିପିରେ ଉଭୟ ଓଡ଼ିଆ ,ହିନ୍ଦି ଓ ତେଲେଗୁ ଲିପି ଲିଖନ ଶୈଳି କୁ ଆପଣେଇଛନ୍ତି । କିନ୍ତୁ ଏଥିପାଇଁ ତାଙ୍କ ଲିପି ଲିଖନ ନିୟମ ଓ ମୌଳିକ ସୃଷ୍ଟି କୁ କୌଣସି ମତେ ହେୟ କରିହେବନି । ଅପାଠୁଆ କୁଇ ଲୋକଙ୍କ ପାଇଁ ସହଜ ହେବା ଭଳି ସେ ତାଙ୍କ ଲିପିରେ କିଛି ଅକ୍ଷର କୁ ଦାଆ ପରି , ନହେଲେ ହାତୁଡ଼ି , ନତୁବା ଚାଷ ହାତ ହତିଆର ପରି ମଧ କରିଛନ୍ତି । ତାଙ୍କ ଲିପି ସୃଷ୍ଟି ନେଇ ଦାସୁ ହସି ହସି କହନ୍ତି , ' ତେଲେଗୁ କାହିଁକି ଜାଣିନୁ ବୋଲି ଆନ୍ଧ୍ର ପୋଲିସ୍ ମୋତେ ଦି ଦିନ ପିଟିଲେ । ଜିଦ୍ ରେ ଜେଲ୍ ରେ ଲାଗିପଡ଼ି

---

*ରାୟଗଡା-ଗଜପତି ଜିଲ୍ଲାର କୁଇ ଭାଷାରେ ହ ଉଚ୍ଚାରଣଟି ଫୁଲବାଣୀ ଜିଲ୍ଲାରେ ସ ଉଚ୍ଚାରିତ ହୋଇଥାଏ ।*

ତେଲେଗୁ ଶିଖିଲି । ଯାହା ହେଉ ଆମ ଲିପି ତିଆରି କରିବାରେ ମୋତେ ଏଇଟା ବେଶି ସାହାଯ୍ୟ କଲା ।'

ଏହିପରି , ଦାସୁରାମ ମଳିକ ଜେଲ ମଧ୍ୟରୁ ବାହାରିବା ବେଳକୁ ଭାଷାବିତ୍ ତଥା କୁଇ ଲିପି ଉଦ୍ଭାବକ ଦାସୁରାମ ମାଲେକା ରେ ପରିଣତ ହୋଇଥିଲେ ।

**ଜଣେ ସଫଳ ସଂଗଠକ ଓ ବିପ୍ଳବୀ ସାହିତ୍ୟ ପ୍ରଚାରକ :**

ଯେଉଁ ଦିନଠୁ ଦାସୁ ବିପ୍ଳବୀ ସଂଗଠନରେ ଯୋଗଦେଲେ , ସେହିଦିନ ରୁ ସଂଗଠନ ବଢାଇବାରେ ତାଙ୍କର ନିଷ୍ଠା ଦେଖାଇ ଆସିଛନ୍ତି । ପ୍ରତି ବୈଠକକୁ ଆସିଲା ବେଳକୁ ନୂଆ ଜାଗାରେ ସଂଗଠନ ବଢାଇଥିବା ଓ ନୂଆ କର୍ମୀ ସଂଗ୍ରହ କରିଥିବା ଖବର ଛଡା ସେ କେବେ ଆସନ୍ତି ନାହିଁ । ରାୟଗଡା ,ଗଜପତି ଠାରୁ ଗଂଜାମ ଓ ଫୁଲବାଣୀ ଯାଏଁ , ସବୁ ଠି ସେ ସଂଗଠନ ପାଇଁ ସୃଷ୍ଟି କରିଥିଲେ ନୂଆ ସଂପର୍କ । ତାଙ୍କ ମୁଣାରେ ସବୁ ବେଳେ ଥିବ ବିପ୍ଳବୀ ସାହିତ୍ୟ । ଘରେ ଘରେ ପଶି , ଲୋକଙ୍କୁ ବୁଝାଇ ବିପ୍ଳବୀ ସାହିତ୍ୟ ବିକ୍ରି କରିବାରେ ସେ ସିଦ୍ଧହସ୍ତ ଥିଲେ । ଖାଲି ଯେ ବହି ବାଂଟି ଦେଉଥିଲେ , ତା ନୁହେଁ । 'ଏଇଟା ଗରିବ ଲୋକର ସଂଗଠନ , ଗରିବ ର କଷ୍ଟ ଅର୍ଜିତ ପଇସାରେ ତା ବିପ୍ଳବୀ ମତବାଦ ସେ କିଣି ପଢିବ ।' - ଏ ବିଷୟ ବୁଝାଇ ସେ ନିୟମିତ ଗ୍ରାହକ ସଂଗ୍ରହ କରୁଥିଲେ । ପଇସା ହିସାବ ଦେବା ବେଳେ ଥରୁଟିଏ ବି ଏମିତି ନଥିବ , ଯେଉଁଥର କି ଦାସୁରାମ ବିପ୍ଳବୀ ବହି ବିକ୍ରି ପଇସା , ବିପ୍ଳବୀ ଗୀତ କ୍ୟାସେଟ୍ ବିକ୍ରି ପଇସା ଅଥବା ସଂଗଠନ ପାଣ୍ଠି ସଂଗ୍ରହ କରି ନଦେଇଥିବେ । କିଛି କାଳ ପାଇଁ ଜାକବ ମଳିକ ନାଁ ରେ ଦାସୁ ଇନକିଲାବ ପତ୍ରିକା ର ପ୍ରକାଶକ ଥିଲେ । ସେ ଶହୀଦ ହେବା ବେଳକୁ ପ୍ରାୟ ଚାରିଶହ ଇନକିଲାବ ପତ୍ରିକା ତାଙ୍କ ଦାୟିତ୍ୱରେ ବିକ୍ରି କରୁଥିଲେ । ତା ବ୍ୟତିତ ପ୍ରତିଟି ବିପ୍ଳବୀ ସାହିତ୍ୟ ପତ୍ର ପତ୍ରିକା ର ମଧ୍ୟ ସେ ପ୍ରଚାର ପ୍ରସାର କରୁଥିଲେ ।

**ଜଣେ ଭୂମିଗତ ସଂଗଠକ ଭାବେ ଦାସୁ :**

ଜେଲ୍‌ରୁ ଆସିଲା ପରେ ୧୦ ଗୁଣା ଉତ୍ସାହ ନେଇ ଦାସୁ ବିପ୍ଳବୀ ଆନ୍ଦୋଳନରେ କାମ କରିଚାଲିଲେ । ଖୋଲା ଖୋଲି ସାରା ରାଜ୍ୟ ବୁଲି ତାଙ୍କ ଗୀତ ମାଧମରେ ବିପ୍ଳବର ବାର୍ତାକୁ ପ୍ରଚାର କଲେ । ସାମ୍ବାଦିକ ସମ୍ମିଳନୀ କରି ତାଙ୍କ ଗିରଫଦାରୀ ପଛରେ ଥିବା ସରକାରୀ ଷଡ଼ଯନ୍ତ୍ରର ମୁଖାଖୋଲି ଦେଲେ । ଭୁବନେଶ୍ୱର ସମେତ ରାଜ୍ୟର ବିଭିନ୍ନ ପ୍ରାନ୍ତରେ ବୁଦ୍ଧିଜୀବି ମାନେ ତାଙ୍କୁ ସମ୍ବର୍ଦ୍ଧନା ଦେଲେ । ତାଙ୍କ ପ୍ରତି ହୋଇଥିବା ଅନ୍ୟାୟର ନିନ୍ଦା କଲେ । ପରିଶେଷରେ ସେପ୍ଟେମ୍ବର ୨୦୦୪ ରେ ସେ ହଜାର ହଜାର ଲୋକଙ୍କ ସମାବେଶର ନେତୃତ୍ୱ ନେଇ , ଦମନ ପ୍ରତିରୋଧ ମଂଚର ଅନ୍ୟ ନେତାଙ୍କ ସହ ମିଶି ରାଜ୍ୟ

ସରକାର ସହ ଜନଗଣଙ୍କ ସମସ୍ୟା ଉପରେ ଆଲୋଚନା କଲେ । ସୁଦୂର ବମ୍ବେ ଠାରୁ କଲିକତା , ଦେଶର ବିଭିନ୍ନ ଅଂଚଳରେ ଚାଲିଥିବା ଜନ ଆନ୍ଦୋଳନରେ ତାଙ୍କର ସାଂସ୍କୃତିକ ଦଳ ଧରି ପହଁଚି ଯାଉଥିଲେ ଓ ବିପ୍ଳବର ବାର୍ତା ବିଛାଇ ଚାଲିଥିଲେ । ସାଗୁଆ ଲୁଙ୍ଗି ସାଗକୁ ନାଲି ଗଂଜି ପିନ୍ଧି ଗୀତ ନାଚ ପରିବେଷଣ କରୁଥିବା ଏଇ ପତଳା ଗେଡ଼ା ଲୋକଟାକୁ ,ବୁର୍ଜୁଆ ଗଣ ମାଧମ ଗୁଡ଼ିକ ଓଡ଼ିଶାର ଗଦ୍ଦର ନାମରେ ସମ୍ବୋଧିତ କରିବାକୁ ଲାଗିଲେ । ରାଷ୍ଟ୍ର ବା ସରକାର ଏଥିରେ ଉତ୍‌କ୍ଷିପ୍ତ ହୋଇ ତାଙ୍କ ନାଁରେ ଗୋଟିଏ ପରେ ଗୋଟିଏ ମିଥ୍ୟା ମକୋଦ୍ଦମା ଯୋଡ଼ିବାରେ ଲାଗିଲା । ତାଙ୍କ ଖୋଲା କାର୍ଯ୍ୟକ୍ରମ ଉପରେ କଟକଣା ଜାରୀ କଲା । ତାଙ୍କୁ ଦେଖିଲା ମାତ୍ରେ ମାରିଦେବା ପାଇଁ ଦୁଇ ଦୁଇଥର ଓଡ଼ିଶା ସରକାର ର ପୋଲିସ୍ ଚେଷ୍ଟା କରିଥିଲେ ବି ସେ କୌଶଳକ୍ରମେ ଖସିଯାଇଥିଲେ । ନିରସ୍ତ୍ର ଭାବେ ତାଙ୍କ ଗୀତ ଦଳ ଧରି ଗାଁ ଗାଁରେ ସାଂସ୍କୃତିକ କାର୍ଯ୍ୟକ୍ରମ ଦେଖାଉଥିବା ଅବସ୍ଥାରେ , ତାଙ୍କ ଉପରେ ଏଭଳି ଆକ୍ରମଣ ଆସିଥିଲା । ଗୋଟିଏ ଜାଗାରେ ତାଙ୍କର ୭ ଜଣ ସାଥିଙ୍କୁ ପୋଲିସ ଧରିନେଇ ଜେଲରେ ରଖିଲା । ଅଦ୍ୟାବଧି ସେମାନେ ଜେଲ୍‌ରୁ ଖଲାସ ହୋଇନାହାନ୍ତି । , ନନ୍ଦିତା ଦାସଙ୍କ ଅଭିନୀତ ଲାଲ୍‌ସଲାମ ଚଳଚିତ୍ର ଦେଖାଉଥିବା ଅଭିଯୋଗରେ ସରକାର ଏମାନଙ୍କୁ ଜାମିନ୍ ଦେଉନାହିଁ ।

ଜନବିରୋଧି ନବୀନ ସରକାର ୨୦୦୬ରେ ରାଜ୍ୟରେ ମାଓବାଦୀ ଦଳ , ଦମନ ପ୍ରତିରୋଧ ମଂଚ , ଚାଷୀ ମୂଲିଆ ସମିତି ଓ ଜନ ନାଟ୍ୟ ମଣ୍ଡଳୀ ସମେତ କେତେକ ଗଣ ସଂଗଠନକୁ ବେଆଇନ ଘୋଷଣା କରି ଦାସୁରାମଙ୍କ ପରି ଜନନେତା ମାନଙ୍କୁ ଜେଲ ପଠାଇବା ପାଇଁ ପୁଣି ଷଡ଼ଯନ୍ତ୍ର ରଚନା କଲା । ଏଭଳି ପରିସ୍ଥିତିର ସଫଳ ମୁକାବିଲା କରିବା ପାଇଁ ଦାସୁରାମ ଭୂମିଗତ ହେବା ପାଇଁ ବାଧ ହୋଇଥିଲେ । ଭୂମିଗତ ଜୀବନରେ ଥାଇ ବି ସେ ବିପ୍ଳବୀ ଗଣ ଆନ୍ଦୋଳନ , ଭାଷା ଆନ୍ଦୋଳନ ଓ ବିପ୍ଳବୀ ସାଂସ୍କୃତିକ କାର୍ଯ୍ୟକ୍ରମ ଚଳାଇ ରଖିବାରେ ସଫଳ ହୋଇଥିଲେ ।

**ଜଣେ ଜନ ସେବକ ଭାବେ ଦାସୁ :**

କି ଖୋଲା ଜୀବନ , କି ଭୂମିଗତ ଜୀବନ , ସବୁବେଳେ ଦାସୁରାମଙ୍କ ବ୍ୟାଗ ଭରା ଥାଏ । ଦାସୁଙ୍କ ବ୍ୟାଗ୍‌ରେ ଖାଲି ଜନଗଣଙ୍କ ବିପ୍ଳବୀ ଚେତନା ବଢ଼ାଇବା ପାଇଁ ତାଙ୍କ ହତିଆର- ଗୀତ ଖାତା , କଲମ ,ଝଂଜଣି ,ଘୁଙ୍ଗୁର ଓ ବିପ୍ଳବୀ ପତ୍ର ପତ୍ରିକା ଯେ ଥାଏ , ତାନୁହେଁ । ମାଓ ଙ୍କ **ଜନତାଙ୍କ ସେବାକର** କଥାଟିକୁ ସେ ଭଲଭାବେ ବୁଝିଥିଲେ । ସେଥିପାଇଁ ସବୁ ମାଓବାଦୀ କର୍ମୀଙ୍କ ପରି ତାଙ୍କ ପାଖରେ ଥାଏ ଓଷଦ ମୁଣି । ଆଦିବାସୀ ଅଂଚଳରେ ସରକାରୀ ଚିକିତ୍ସା ପାଇବାରେ ଅବହେଳିତ ରୋଗୀ ଜନତାଙ୍କ ସେବା ପାଇଁ

ଔଷଦ ସବୁ ତାଙ୍କ ବ୍ୟାଗରେ ଧରି ବୁଲୁଥିଲେ । ଗାଁ ଲୋକଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇବା ତାଙ୍କର ଥିଲା ଅନ୍ୟ ଏକ ନିତିଦିନିଆ କାମ । ଅଂଚଳର ଯକ୍ଷ୍ମା ପିଡ଼ିତ ରୋଗୀଙ୍କୁ ଡାକ୍ତରଖାନା ନେବା ଠାରୁ ଆରମ୍ଭ କରି ଅନ୍ୟ ରୋଗୀ ମାନଙ୍କୁ ଚିକିତ୍ସା ସୁବିଧା ଯୋଗାଇ ଦେବାରେ ସେ କେବେ ଅବହେଳା କରୁନଥିଲେ । ଜନଗଣଙ୍କ ବିକଳ୍ପ କ୍ଷମତା କେନ୍ଦ୍ରର ଏକ ଅଂଶ ଭାବେ ବିପ୍ଳବୀ ମାନେ ଗାଁ ଗାଁରେ ଗଢୁଥିବା ଜନ ସ୍ୱାସ୍ଥ୍ୟ କମିଟି ଗଠନରେ ତାଙ୍କର ବହୁ ଅବଦାନ ରହି ଆସିଥିଲା ।

ଭାଷଣ , ଗୀତ ଓ ନାଚ ମାଧମରେ ଜନ ଚେତନା ଜାଗ୍ରତ କରାଇବା ସାଥେ ସାଥେ ଔଷଦ ଦେଇ ଜନତାଙ୍କ ସେବା କରିବା କାମରେ ଦାସୁରାମ ସର୍ବଦା ବ୍ୟସ୍ତ ଥିଲେ । ଶେଷରେ ୨୦୦୭ର ଯେଉଁ ମହାମାରୀ ଦକ୍ଷୀଣ ଓଡ଼ିଶାର ବ୍ୟାପକ ଆଦିବାସୀ ଅଧୁଷିତ ଅଂଚଳରେ ହଜାର ହଜାର ଜୀବନ ନେଇ ଚାଲିଗଲା , ତା ବିରୁଦ୍ଧରେ ଦାସୁରାମ ସଂଗ୍ରାମ ପାଇଁ ଅଂଟା ଭିଡ଼ିଲେ । ରାଜ୍ୟରେ କ୍ଷମତାସୀନ ନବୀନ ସରକାର ମହାମାରୀକୁ ମୁକାବିଲା କରିବାରେ ବିଫଳ ବୋଲି କେବଳ ପ୍ରତିବାଦ ନକରି , ଦାସୁରାମ ତାଙ୍କର ସହଯୋଗୀମାନଙ୍କ ସହ ମହାମାରୀ ପିଡ଼ିତଙ୍କ ସେବା କରିବାରେ ଲାଗିଯାଇଥିଲେ ।

ପ୍ରାୟ ପଁଚଷଠି ବର୍ଷ ତଳେ ଏମିତି ଲୋକଙ୍କ ସେବା କରୁ କରୁ ଦିନେ ଓଡ଼ିଶା କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରାଣପ୍ରତିଷ୍ଠାତା ତଥା ନବଯୁଗ ସାହିତ୍ୟ ଆନ୍ଦୋଳନର କର୍ଣ୍ଣଧାର ,କାଳଜୟୀ ଗଳ୍ପ **ଶୀକାର** ର ସ୍ରଷ୍ଟା **ଭଗବତୀ ପାଣିଗ୍ରାହୀ** ନିଜେ ମହାମାରୀରେ ଆକ୍ରାନ୍ତ ହୋଇ ଶହୀଦ୍ ହୋଇଯାଇଥିଲେ । ତାଙ୍କରୀ ସମୟରେ , ବନ୍ୟା ପିଡିତ ଲୋକଙ୍କୁ ସାହାଯ୍ୟ କରିବାକୁ ଯାଇ ପୁଅ କୁ ହରାଇଥିବା **ଗୋପବନ୍ଧୁ** ଙ୍କୁ ମହାନ ସେବକର ଆଖ୍ୟା ଦେଇଥିବା ବୁର୍ଜୁଆ ସରକାର ଓ ଗଣ ମାଧମ , ଭଗବତୀଙ୍କ ବିଷୟରେ ନିରବ ରହିଥିଲେ । ଆଜି ସେହି ଶ୍ରେଣୀ ଦୃଷ୍ଟି କୋଣରୁ ଦାସୁଙ୍କ ତ୍ୟାଗକୁ ବୁର୍ଜୁଆ ଗଣମାଧମ ନ୍ୟୁନ କରି ଦେଖିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ସେଦିନ ଦେଶରେ ଥିଲା ବ୍ରିଟିଶ୍ ଶାସନ । ଆଜି ତଥାକଥିତ ସ୍ୱାଧିନ ଦେଶରେ ବ୍ରିଟିଶ୍ର ଦଲାଲ୍ ମାନେ କଂଗ୍ରେସ , ବିଜେଡି ,ବିଜେପି ଓ ସିପିଏମ୍ /ସିପିଆଇ ନାଁରେ କ୍ଷମତାରେ ବସିଛନ୍ତି । ଲୋକେ ସେମିତି ଖାଦ୍ୟ ବିନା , ଚିକିତ୍ସା ବିନା ମରୁଛନ୍ତି । ଚିକିତ୍ସା ବିନା ମରୁଥିବା ମହାମାରୀ ପିଡ଼ିତଙ୍କୁ ସେବା କରୁ କରୁ ମହାମାରୀରେ ଆକ୍ରାନ୍ତ ହୋଇ ବିପ୍ଳବୀ ସାଥି ଦାସୁରାମ ଶହୀଦ୍ ହୋଇଗଲେ -ଗୋଟିଏ ଜନ ସେବକ ବିପ୍ଳବୀର ଜୀବନ ଦୀପ ଲିଭିଗଲା ।

**ଦାସୁଙ୍କ ପରିବାର :**

ଦାସୁଙ୍କ ମୃତ୍ୟୁ ବେଳକୁ ତାଙ୍କ ଘରେ ଥିଲେ ତାଙ୍କର ବୁଢ଼ୀ ମାଆ , ସ୍ତ୍ରୀ ଓ ତିନୋଟି ପିଲା (ଗୋଟିଏ ପୁଅ , ଦୁଇଟି ଝିଅ) । ବିପ୍ଳବୀ ରାଜନୀତିରେ ସଂଶ୍ଲିଷ୍ଟ ହେଲେ ନିଜ ପରିବାରକୁ ମଧ ଉପଯୁକ୍ତ ଚେତନା ଦେବା ଦରକାର , ଏ ବିଷୟ ସେ ଭଲ ଭାବେ ବୁଝିଥିଲେ । ସେଥିପାଇଁ ବିଭିନ୍ନ ଅସୁବିଧା ସତ୍ୱେ ସେ ପରିବାର ଠାରୁ ବିଶେଷ ପ୍ରତିବନ୍ଧକର ସାମନା କରିନଥିଲେ । ଦାସୁ ଜେଲ ଗଲାବେଳେ ତାଙ୍କ ମାଆ ଓ ସ୍ତ୍ରୀଙ୍କ ସହ ସଂଗଠନ ଲୋକେ କଥା ହେଲେ , ପରିବାରର ଭଲମନ୍ଦ ପଚାରି କିଛି ସାହାଯ୍ୟ କରିବାକୁ ଚାହିଁଲେ । ତାଙ୍କ ମାଆ ଓ ସ୍ତ୍ରୀ ଉଭୟ କହିଲେ , "ସେ ତ ସବୁବେଳେ ଲୋକଙ୍କ ପାଇଁ କାମ କରୁଥିବା ମଣିଷ , କୋଉ କେବେ ଘରେ କ'ଣ କରେ କି ? ଆମେ କାମ କରି ଘର ଚଳାଉ , ଆଜି ବି ଚଳାଇବୁ । ସେ ବିଷୟ ତୁମେ ମାନେ ଚିନ୍ତା କରିବା ଦରକାର ନାହିଁ । ଘରେ ଥିବା ବେଳେ ସଂଗଠନ ଲୋକଙ୍କଠାରୁ ଆଲୋଚନା ଶୁଣି , ଘରେ ଅମ୍ବସଢ଼ାର ଆଚାର କରିଥିଲା , ଖାଇପାରିଲାନି । ଆମେ ସରକାରୀ ଜେଲ୍ ଆଇନ୍ ଜାଣିବୁନି । ତାକୁ ଥରେ ଦେଖିଥାଆନ୍ତୁ ଓ ଆମ୍ବସଢ଼ା ଟିକିଏ ଦେଇଥାନ୍ତୁ , ଏତିକି ସାହାଯ୍ୟ କଲେ ଭଲ ।" ଜେଲ୍ ମଧରେ ଦାସୁଙ୍କୁ ଭେଟିବାକୁ ଥିବା ବହୁବିଧ କଟକଣା ପାଇଁ ତାଙ୍କ ମା' ଓ ସ୍ତ୍ରୀର ଇଛା ପୁରଣ କରିବାରେ ସଂଗଠନ ଲୋକେ ସଫଳ ହେଲେ ନାହିଁ । ଅଶିକ୍ଷିତ ମା' ଓ ସ୍ତ୍ରୀ ଙ୍କ ମଧରେ ଘରେ ବେଳେ ବେଳେ ଝଗଡ଼ା ହୁଏ । ସଭିଙ୍କ ଘରେ ଝଗଡ଼ା ହୁଏ , ଏଠି ବି ହୁଏ । ଏଥିରେ ନୂଆ କ'ଣ ? ମାତ୍ର ନୂଆ କଥା ହେଉଛି ଝଗଡ଼ା ହୁଏ ସଭା ସମାବେଶକୁ ଯିବା ବିଷୟ ନେଇ । ସ୍ତ୍ରୀର ଅଭିଯୋଗ , ଦାସୁ ସବୁବେଳେ ତା ମାଆକୁ ସଭା ସମାବେଶ ଗଲାବେଳେ ନେଇକରି ଯାଉଛି । ମୋତେ କେବେ ବି ନେଉନି । ମାଆର କଥା ହେଉଛି , ଦି ଜଣ ଗଲେ ଘର ଜଗିବ କିଏ ? କଳି ତୁଟେ , ଥରେ ମାଆ ଗଲେ , ଆଉ ଥରେ ସ୍ତ୍ରୀ ଯାଏ ପିଲାଙ୍କୁ ସାଙ୍ଗରେ ନେଇ । ଡଙ୍ଗର ଉପରେ ବା ବାଟଘାଟରେ ସଂଗଠନ ଲୋକଙ୍କୁ ଦେଖି ଦେଲା ମାତ୍ରେ ଦାସୁଙ୍କ ମାଆ କାଳ ବିଳମ୍ବ ନକରି ଲାଗିଯାଆନ୍ତି ସାଥିମାନଙ୍କ ଖାଦ୍ୟ ଯୋଗାଡ଼ରେ । ସତେ ଯେପରି , ନିଜ ପୁଅ ଏବଂ ଅନ୍ୟ ବିପ୍ଳବୀ ମାନଙ୍କ ମଧରେ ସେ କେବେ ବି ପାର୍ଥକ୍ୟ ଦେଖନ୍ତି ନାହିଁ ।

ଦାସୁ ଶହୀଦ ହେବା ପରେ , ତାଙ୍କ ମାଆ ପାନିଆ ତଲାସି ନାଁରେ ଗୁଡ଼ିପଙ୍ଗାକୁ ଆସିଥିବା ପୋଲିସ୍ କୁ ଜବାବ୍ ଦେଲେ " ମୋର ପୁଅ ତ ମଲା , ଏବେ କ'ଣ ନେବାକୁ ଆସିଛ ?" ପୋଲିସ୍ ର ଧମକ ସତ୍ୱେ ପୁଅର ଶବକୁ ସମାଧି ମଧରୁ କାଢ଼ିବାକୁ ସେ ରୋକ୍‌ଠୋକ୍ ମନା କଲେ । 'ମତେ ମାରି ଦେଇପାର , ମାତ୍ର ଯେଉଁ ହାତରେ ମୁଁ ମୋ

ପୁଅକୁ ସମାଧି ଦେଇଛି , ସେ ହାତରେ ଆଉ କାନ୍ଧିପାରିବିନି ।" ତାଙ୍କ ମାଆଙ୍କ ଏ ସାହାସରେ ଉତ୍ସାହିତ ହୋଇ ଗାଁର ଆଉ କେତେ ଯୁବକ ମାଡ଼ ଖାଇଲେ ବି ପୋଲିସ୍ କୁ ସାହାଯ୍ୟ କଲେ ନାହିଁ ।

ଦାସୁର ଶହୀଦତ୍ୱ ପରେ ତାଙ୍କ ଗାଁ କୁ ଯାଇଥିବା ବୁଦ୍ଧିଜୀବି ଓ ଗଣତାନ୍ତ୍ରିକ ଆନ୍ଦୋଳନର ନେତାମାନଙ୍କୁ ତାଙ୍କ ମା' ଯେଉଁ ସନ୍ଦେଶ ଦେଲେ , ତାହା ଶୁଣିଲେ ଲାଗିବ , ହୁଏତ କିଏ ବଡ଼ ବଡ଼ ନେତାଙ୍କ ଭାଷଣ ପାଇଁ ବୁଝାଇ କରି ଭାଷଣ ଲେଖି ତାଙ୍କ ହାତରେ ଧରାଇ ଦେଇଛି । ମାତ୍ର ଦାସୁଙ୍କ ଲଗାତର ଚେଷ୍ଟାରେ ତାଙ୍କ ପରିବାର ଯେତିକି ଚେତନା ପାଇଥିଲେ , ତା'ରି ଫଳସ୍ୱରୁପ ଦାସୁଙ୍କ ମାଆଙ୍କ ମୁହଁ ଦେଇ ଦାସୁଙ୍କ କଥା ବାହାରି ଆସିଲା "ମୋ ପୁଅ ପୋଲିସ୍ ଗୁଳିରେ ମରିଲେ ଦୁଃଖ ନଥାନ୍ତା । ଦୁଃଖ ହେଉଛି , ଝାଡ଼ାବାନ୍ତିରେ ଯାହା ଆଖି ମୁଜିଦେଲା । ......................... ତା କରିବା କାମକୁ ସାଥିମାନେ ଅଧାରେ ଛାଡ଼ି ଦେବେ ନାହିଁ । ପୁରା କରିବେ ; ଏତିକି ମୋର ଇଚ୍ଛା ।"

**ବିପ୍ଳବୀ ଜୀବନରେ କଳାଦାଗ :**

ସବୁ ମଣିଷ ଭୁଲ କରନ୍ତି , ମାତ୍ର ବଡ଼ କଥା ହେଉଛି କିଏ ଭୁଲକୁ ବୁଝି ନିଜକୁ ସୁଧାରି ପାରୁଛି । ଦାସୁଙ୍କ ବିପ୍ଳବୀ ଜୀବନର ପ୍ରାଥମିକ କାଳରେ , ତାଙ୍କ ଜୀବନରେ ଏକ ଦୁର୍ଘଟଣା ଘଟିଥିଲା । ଆଦିବାସୀ ଜୀବନରେ ବହୁ ବିବାହ , ଦ୍ୱିତୀୟ ପତ୍ନୀ ଗ୍ରହଣ ଏକ ପ୍ରଚଳିତ ପ୍ରଥା । ସଂଗଠନ ବିରୋଧ ଯୋଗୁଁ ଏହା କିଛି କମିବାରେ ଲାଗିଛି । ଦାସୁ ମଧ ଦ୍ୱିତୀୟ ପତ୍ନୀ ଗ୍ରହଣ କରି ସଂଗଠନରେ ଦଣ୍ଡ ବିଧାନର ଶୀକାର ହୋଇଥିଲେ । ମାତ୍ର ଏ ଘଟଣାରେ ସେ ବହୁତ ଅନୁତପ୍ତ ଥିଲେ । ସେଥିପାଇଁ ଦଣ୍ଡ ବିଧାନ ସ୍ୱରୁପ ତାଙ୍କୁ ଚାଷୀ ମୂଲିଆ ସମିତିର ଡିଭିଜନାଲ କମିଟି ସଦସ୍ୟରୁ ହଟାଇଦେବା ପରେ ମଧ ସେ ପୂର୍ବପରି ସକ୍ରୀୟ ଭାବେ ଆନ୍ଦୋଳନ ପାଇଁ କାମ କରୁଥିଲେ । ତାଙ୍କର ସକ୍ରୀୟତା ଓ ଭୁଲ ବିଷୟରେ ଅନୁତାପ ମଧଦେଇ ସେ ପୁଣି ସଂଗଠନର ନେତୃତ୍ୱକୁ ଫେରି ଆସିଥିଲେ । ପରେ ଏହି ଦ୍ୱିତୀୟ ପତ୍ନୀ ତାଙ୍କୁ ଛାଡ଼ି ଅନ୍ୟତ୍ର ବିବାହ କରିଥିଲେ ।

ହେଲେ ଏହି ଦ୍ୱିତୀୟ ବିବାହ ଘଟଣାଟି ଦାସୁଙ୍କୁ ଏତେ ବ୍ୟଥିତ କରିଥିଲା ଯେ , ଯେବେ ବି ଦ୍ୱିତୀୟ ବିବାହ ସଂପର୍କୀତ କଥା ଆଲୋଚନା ହୁଏ , ସେ ସର୍ବଦା ନିଜକୁ ଦୋଷୀ ଭାବି ଚୁପଚାପ୍ ବସି ରୁହନ୍ତି । ଏଭଳି ଭୁଲ ଅନ୍ୟ କୌଣସି ସାଥି ଯେପରି ନକରନ୍ତି , ଏଥିପାଇଁ ପରାମର୍ଶ ଦିଅନ୍ତି । ଏହି ଘଟଣାଟି ତାଙ୍କ ବିପ୍ଳବୀ ଜୀବନରେ ଏକ କଳାଦାଗ ଭଳି ସେ ସର୍ବଦା ଅନୁଭବ କରୁଥିଲେ ।

**ଦାସୁ ବଂଚିରହିବେ ତାଙ୍କ ସୃଷ୍ଟିରେ :**

ଦାସୁ ଓ ତାଙ୍କର ସାଥିମାନେ ମିଶି ଦୁଇଟି ଗୀତ କ୍ୟାସେଟ୍ 'କୁଇ ଦିନା ବୃମ୍ବୁ ଗାଡ଼ି' ରଣ୍ଡି ଓ ରିଣ୍ଡି - ଅର୍ଥାତ୍ କୁଇ ଅଂଚଳର ଆନ୍ଦୋଳନ ଗୀତ ୧ ଓ ୨ ବାହାର କରିଥିଲେ । ଏହି କ୍ୟାସେଟ୍ ଦ୍ୱୟ ହଜାର ହଜାର ସଂଖ୍ୟାରେ କୁଇ ଅଂଚଳରେ ବିକ୍ରି ହୋଇଛି । ସେ ନିଜେ ପ୍ରାୟ ଶହେରୁ ଅଧିକ କୁଇ ଭାଷାରେ ବିପ୍ଳବୀ ଗୀତ ରଚନା କରିଛନ୍ତି । କୁଇ ଦିନା ବୃମ୍ବୁ ଗାଡି - ନାମରେ ପ୍ରକାଶିତ ଗୀତ ବହିରେ ତାଙ୍କର ଅନେକ ଗୀତ ପ୍ରକାଶିତ ହୋଇଛି । କେତେ ଅନୁବାଦ ଗୀତ ମଧ ରହିଛି । ଓଡ଼ିଆ ଭାଷାରେ ମଧ ସେ ଗୀତ ରଚନା କରିବା ଆରମ୍ଭ କରିଥିଲେ ।

ପୋଲିସର ଆକ୍ରମଣ ଓ ଜେଲ୍ ନିର୍ଯ୍ୟାତନା ମଧଦେଇ ତାଙ୍କର ସ୍ୱାସ୍ଥ୍ୟର ବ୍ୟାପକ ଅବନତି ଘଟିଥିଲା । ତାଙ୍କର ଭଙ୍ଗା ଗୋଡ଼ ସହ ସେ ଥରେ ପୋଲିସ୍ ଘେରରୁ ଖସିବାକୁ ସକ୍ଷମ ହୋଇଥିଲେ । ସେ ଭଙ୍ଗା ଗୋଡ଼ର ଚିକିତ୍ସା ଚାଲିଥାଏ , ମାତ୍ର ତାଙ୍କ ବିପ୍ଳବୀ କାର୍ଯ୍ୟକଳାପ ଅଟକି ଯାଇନଥାଏ । ଏ ଭଙ୍ଗା ଗୋଡ଼ ନେଇ ପୋଲିସ୍ ଦମନକୁ ସାମନା କଲାବେଳେ ତାଙ୍କର ଗୀତ ରଚନା ମଧରେ ସେ ଲେଖିଲେ ଓଡିଆ ଗୀତଟିଏ...........

ବିପ୍ଳବୀ ଜୀବନ ,କେଡ଼େ କଷ୍ଟ ଜୀବନ , ନିଆଁ ପରି ଜଳୁଥିବ ; ଏହି ଜୀବନ କର ଅର୍ପଣ , ଲୋକ ପାଇଁ ଦିଅ ବଳିଦାନ ........... ।

ସରକାରୀ ନିର୍ଯ୍ୟାତନା , ପରିବାରର ଦାରୁଣ ଆର୍ଥିକ ଅବସ୍ଥା , ନିଜର ବୃଦ୍ଧା ରୋଗୀଣା ମା , ରୋଗୀଣା ପିଲା , ସରକାରଙ୍କ ହତ୍ୟା ଧମକ , ନିଜର ଭଂଗା ଗୋଡ଼ ଯାହାର ବିପ୍ଳବୀ ଜୀବନକୁ ଅଟକାଇ ପାରିନଥିଲା , ସେ ଆଜି ପ୍ରକୃତି ନିକଟରେ ହାରିଗଲେ । ସବୁ ମଣିଷ ଦିନେ ଯେଉଁଠି ହାରିଯାଆନ୍ତି , ସେ ସେଠି ହାରିଗଲେ । ମହାମାରୀ ରୂପରେ ପ୍ରକୃତିର ଆକ୍ରମଣ , ତାକୁ ସାମନା କରିବାକୁ ଏ ଶୋଷକ ସରକାରର ବ୍ୟର୍ଥତା ବିରୁଦ୍ଧରେ ସଂଗ୍ରାମ କରୁ କରୁ ସେ ଶହୀଦ ହୋଇଗଲେ । ହେଲେ ଲୋକଙ୍କ ହୃଦୟରେ ସେ ଚିରଦିନ ବଂଚି ରହିଲେ ତାଙ୍କର ବିପ୍ଳବୀ ଜୀବନର କାର୍ଯ୍ୟ ଶୈଳି ଓ ସୃଷ୍ଟି ମଧଦେଇ । ତାଙ୍କ ବିପ୍ଳବୀ ଗୀତ ,ମନଲୋଭା ସ୍ୱର , ନୂତନ ଭାବେ ସୃଷ୍ଟି ହୋଇଥିବା କୁଇ ଲିପି ତଥା ମନଲୋଭାଣିଆ ଭାଷଣ ଓ ହସହସ ମୁହଁ........... ଜନତାଙ୍କ ହୃଦୟରେ ସବୁଦିନ ବଂଚି ରହିବ ।

ଆଜି ଦାସୁରାମର ଶହୀଦତ୍ୱ ଆମ ପାଇଁ ଆଣି ଦେଇଛି ନୂଆ ଦାୟିତ୍ୱ ଓ ଆହ୍ୱାନ । ସେ ଯେଉଁ ମହାନ ଲକ୍ଷ୍ୟ ନେଇ ସଂଗ୍ରାମ କରୁଥିଲେ , ସେହି ଲକ୍ଷ୍ୟରେ ଏକ ଶୋଷଣହୀନ ଓ ଶ୍ରେଣୀହୀନ ସମାଜ ଗଠନର ଲଢ଼େଇକୁ ଜୋରଦାର କରିବାକୁ ହେବ । ତାଙ୍କ ଦ୍ୱାରା

ସୃଷ୍ଟି ହୋଇଥିବା କୁଇ ଲିପିର ବ୍ୟାପକ ପ୍ରଚାର ପ୍ରସାର କରି କୁଇ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ଆନ୍ଦୋଳନ ଗଢ଼ିତୋଳିବାକୁ ହେବ । ଏହାହିଁ ହେବ ଦାସୁରାମଙ୍କ ପରି ମହାନ ଶହୀଦଙ୍କ ପାଇଁ ପ୍ରକୃତ ଶ୍ରଦ୍ଧାଂଜଳୀ ।



*ଦାସୁଙ୍କ ଶହୀଦତ୍ୱ ପରେ ଦୁଃଖରେ ତାଙ୍କ ମାଆ ବାନ୍ଦାମାଇ ଓ ଝିଅ ସୁଲୋଚନା*

# ସେଇ ସ୍ଫୁଲିଙ୍ଗ

**ସୁରଭି**

ସମ୍ବାଦପତ୍ରରେ ମୁଖ୍ୟ ଖବର, ଝାଡ଼ାବାନ୍ତି ରୋଗରେ ବିପ୍ଳବୀ କବି ଦାସୁରାମ ମାଲେକା ଶହିଦ । ସବୁଠାରୁ ପଛୁଆ ରାଜ୍ୟ ଓଡ଼ିଶାର ଗଜପତି ଜିଲ୍ଲାର କେଉଁ ଏକ ଅଜ୍ଞାତ/ଅଖ୍ୟାତ ଗାଁ ଗୁଡ୍ରିପଙ୍ଗା ରେ ଗୋଟିଏ ଗରିବ ପରିବାରରେ ଜନ୍ମ ତାଙ୍କର । କିନ୍ତୁ ସେଇ ଅଖ୍ୟାତ ଦୁଃଖ ଦୁର୍ଦ୍ଦଶା ଭରା ଜୀବନି ଭିତରୁ ବି ସେ ମହାନ ଲକ୍ଷ୍ୟର ସନ୍ଧାନ କରିପାରିଥିଲେ । ଆମ ଦେଶର ତଥା ସର୍ବହରା ବିପ୍ଳବର ଅନ୍ୟାନ୍ୟ ଅମର ଶହିଦଙ୍କ ଭଳି ପିଲାବେଳୁ ଅନାହାର , ଦାରିଦ୍ର୍ୟତା , ଅଶିକ୍ଷା , ଦୁଃଖ , ଯନ୍ତ୍ରଣା ତାଙ୍କ ଆଗରେ ହାର ମାନିଥିଲା । ଚଳମାନ ଶୋଷଣ , କଷଣ , ଦମନ ଓ ନିର୍ଯ୍ୟାତନା ବିରୁଦ୍ଧରେ ପଛୁଆ , ଅବହେଳିତ ଆଦିବାସୀମାନଙ୍କୁ ଏକଜୁଟ୍ କରି ଆନ୍ଦୋଳନ କରିବାରେ ସେ ଥିଲେ ସିଦ୍ଧ ହସ୍ତ । ପ୍ରଚଳିତ ଶିକ୍ଷା ବ୍ୟବସ୍ଥାରେ ମାତ୍ର କେତୋଟି ପାହାଚ ଚଢ଼ିଥିବା ଶହିଦ ଦାସୁରାମ , ମୁଖା ଖୋଲିଦେଇଥିଲେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର । ସେ ପ୍ରସ୍ତୁତ କରିଥିଲେ କୁଇ ଲିପି । କୁଇ ଭାଷାଭାଷି ଆଦିବାସୀଙ୍କ ସଂଖ୍ୟା କିଛି କମ୍ ନୁହେଁ ଆମ ରାଜ୍ୟରେ । ସେମାନଙ୍କର ଆର୍ଥିକ , ରାଜନୈତିକ , ସାଂସ୍କୃତିକ ସର୍ବୋପରି ସାମାଜିକ ଉନ୍ନତି ପାଇଁ ଏ ଭାଷାର ପ୍ରଚାର ପ୍ରସାର ମଧ ଆବଶ୍ୟକ ହୋଇପଡ଼ିଲା । କୁଇ ଆଦିବାସୀ ସମାଜ ମଧରେ କଥିତ କୁଇ ଭାଷାର ପ୍ରଚଳନ ଥିଲେ ମଧ ଏଯାବତ୍ ଏହାର ଲିପି ସୃଷ୍ଟି ତଥା ପ୍ରଚଳନ ପାଇଁ ସରକାରଙ୍କ ତରଫରୁ କୌଣସି ଉଦ୍ୟମ ବା ଆଗ୍ରହ ନଥିଲା । ରାଜଭାଷା ଓ ଲୋକଭାଷା ମଧରେ ପାର୍ଥକ୍ୟ ରଖି ଯୁଗେ ଯୁଗେ ଶାସକ ମାନେ ସାଧାରଣ ଲୋକଙ୍କୁ ଶୋଷଣ କରିଆସିଛନ୍ତି । ଏହା ମଧ କୁଇ ଭାଷାଭାଷୀଙ୍କ ପାଇଁ ଆଜି ଚାଲୁ ରହିଛି । ସରକାରର ଏଭଳି ଭାଷାନୀତି ବିରୁଦ୍ଧରେ ଲଢ଼ିବାର କାର୍ଯ୍ୟଭାରକୁ ସ୍ୱତଃ ଆପଣେଇ ନେଇଥିଲେ ସମସ୍ତଙ୍କ ପ୍ରିୟ ଶହିଦ ଦାସୁରାମ । ବିପ୍ଳବୀ ଦାସୁରାମ ଅସୀମ ଆଗ୍ରହ ଓ ଅନନ୍ୟ ଚେଷ୍ଟାରେ ପ୍ରସ୍ତୁତ କଲେ କୁଇ ଲିପି । ଯାହା କୁଇ ସମାଜର ସାର୍ବିକ ଉନ୍ନତି କ୍ଷେତ୍ରରେ ଏକ ବିରାଟ ଅବଦାନ । ସର୍ବହରା ଶ୍ରେଣୀର ବିପ୍ଳବ ସହିତ ତାଳଦେଇ ନିଜ ହକ୍ ବା ଅଧିକାର ପାଇଁ ଉଭୟ ଦେଶୀ ବିଦେଶୀ ପୁଁଜିପତି ଶକ୍ତି ଭଳି ଶତ୍ରୁମାନଙ୍କ ବିରୁଦ୍ଧରେ କୁଇ ମାନଙ୍କ ବିପ୍ଳବକୁ ତ୍ୱରାନ୍ୱିତ କରିବା କ୍ଷେତ୍ରରେ ଏହି କୁଇ ଲିପି ଆସନ୍ତା ଦିନ ମାନଙ୍କରେ ଏକ ମୁଖ୍ୟ ଭୂମିକା ଲିଭେଇବା ନିଶ୍ଚୟ । ସରକାରୀ ଦମନ ଯୋଗୁଁ ଏ ଲିପି ପାଇଁ ସରକାରୀ ସ୍ୱୀକୃତି ପାଇବାରେ ଦାସୁ ସଫଳ ହେଲେ ନାହିଁ । ମାତ୍ର କୁଇ ସମାଜ ମଧରେ ଏହାର

ଲୋକପ୍ରିୟତା ଦିନେ ନା ଦିନେ ଏ ଶୋଷକ ସରକାରକୁ ବାଧ କରିବ ଏ ଲିପିକୁ ସ୍ୱୀକୃତି ଦେବା ପାଇଁ ।

ଦାସୁରାମ , କୁଇ ସମାଜ ମଧରେ ଚେତନା ସୃଷ୍ଟି କରିବା ପାଇଁ ତଥା ପ୍ରଚଳିତ ଶୋଷଣମୂଳକ ସମାଜର ବାସ୍ତବ ମୁଖା ଖୋଲି ଦେବା ପାଇଁ , ଗୀତକୁ ମୁଖ୍ୟ ମାଧମ କରିଥିଲେ । ସେ କୁଇ ଭାଷାରେ ଶହ ଶହ ବିପ୍ଳବୀ ଗୀତ ରଚନା କରିଯାଇଛନ୍ତି । ଗୀତ ଗୁଡ଼ିକୁ ନିଜ ସହଯୋଗୀ ମାନଙ୍କ ସହ ମିଶି ଦାସୁରାମ ନିଜେ ଦୁର୍ଗମ ରାସ୍ତା ଅତିକ୍ରମ କରି ଗାଁ ଗାଁ ବୁଲି ଗାଇ ଶୁଣାଉଥିଲେ । ତାଙ୍କ ରଚିତ ଏହି ଗୀତ ଗୁଡ଼ିକ ଯୁବକ ଯୁବତୀଙ୍କ ସଙ୍ଗେ ସଙ୍ଗେ ବୃଦ୍ଧବୃଦ୍ଧା ତଥା କୁନିକୁନି ପିଲାଙ୍କ ମନରେ ଅଦମ୍ୟ ସାହସ ଭରିଦେଉଥିଲା ; ପ୍ରଚଳିତ ଶୋଷଣ ଶାସନ ବିରୁଦ୍ଧରେ ସ୍ୱର ଉତୋଳନ କରିବା ପାଇଁ । ତାଙ୍କର ଗୀତରେ ସର୍ବହରା , ଦୁଃଖୀ ଦରିଦ୍ର ମାନଙ୍କର ନିତିଦିନିଆ ତେଲ ଲୁଣ ସଂସାରର ସମସ୍ୟାମାନ ସ୍ପଷ୍ଟ ଦୃଶ୍ୟମାନ ହୁଏ । ଶହିଦ ଦାସୁରାମଙ୍କ ଦ୍ୱାରା ସୃଷ୍ଟ , ତଥା ପ୍ରସାରିତ ଏହି ବିପ୍ଳବୀ ସଂସ୍କୃତିର ପ୍ରଭାବ ଏତେ ବେଶୀ ଥିଲା ଯେ , ଫେବୃଆରୀ ୬ , ୨୦୦୩ ମସିହାରେ ଆନ୍ଧ୍ର/ଓଡ଼ିଶା ସରକାର ତାଙ୍କୁ ଆତଙ୍କବାଦୀ , ଦେଶଦ୍ରୋହୀ ଆଦିର ମିଥ୍ୟା ସଂଜ୍ଞା ଦେଇ ମିଛ କେଶ୍ ସହାୟତାରେ ଜନତାଙ୍କ ନଜରରୁ ଲୁଚି ଗିରଫ୍ କରିଥିଲେ । କେବଳ ଏତିକି ନୁହେଁ , ତାଙ୍କୁ ଅକଥନୀୟ ଶାରୀରିକ ତଥା ମାନସିକ ନିର୍ଯ୍ୟାତନା ଦେଇ ଜନତାଙ୍କ ନଜରରୁ ଲୁଚେଇ ରଖି ଜୀବନରେ ମାରିଦେବାକୁ ଚେଷ୍ଟା କରିଥିଲେ । ଆଦିବାସୀ , ଯୁବ ସମାଜ ଏବଂ ବୁଦ୍ଧିଜୀବିଙ୍କ ମଧରେ ଥିବା ତାଙ୍କର ଲୋକପ୍ରିୟତା ଯୋଗୁଁ ଦାସୁରାମଙ୍କ ଗିରଫ୍‌ଦାରୀ ବିରୁଧରେ ପ୍ରତିବାଦ ଉଠିଥିଲା । ଦୀର୍ଘ ୧୬ ମାସ ବନ୍ଦି କରିରଖିଲା ପରେ ସରକାର ତାଙ୍କୁ ମୁକ୍ତ କରିବା ପାଇଁ ବାଧ ହୋଇଥିଲା ।

ଆମ ଦେଶରେ ଏଭଳି ଘଟଣା ପ୍ରଥମ ବା ଆଶ୍ଚର୍ଯ୍ୟଜନକ ନୁହେଁ । ଦେଶକୁ ସ୍ୱାଧିନ କରିବା ପାଇଁ ଇଂରେଜମାନଙ୍କ ସହିତ ଲଢ଼େଇ କରି ମାତ୍ର ୨୩ ବର୍ଷରେ ଫାଶୀ ଦଣ୍ଡରେ ଦଣ୍ଡିତ ହୋଇଥିବା ଶହୀଦ୍ ଭଗତସିଂକୁ ଏବେ ବି ପାଠ୍ୟକ୍ରମରେ ପ୍ରଚଳିତ ସରକାର ଆତଙ୍କବାଦୀର ଆଖ୍ୟା ଦେଉଛି । କିନ୍ତୁ ଶ୍ରେଣୀ ସଂଗ୍ରାମ ଇତିହାସରେ ସର୍ବହରା ଶ୍ରେଣୀ ପାଇଁ ସେ ଭଗତ ସିଂ ହୁଅନ୍ତୁ କି ଦାସୁରାମ ହୁଅନ୍ତୁ ,ସର୍ବଦା ଅମର ଶହିଦ ହୋଇରହିବେ । ୧୬ ମାସ ପରେ ସରକାରୀ ଅତ୍ୟାଚାରର ଅନ୍ତ ହୋଇଯାଇ ନଥିଲା । ବରଂ ଶୋଷକମାନେ ଆହୁରି ଭୟଭୀତ ତଥା ବାଚାଳ ପ୍ରାୟ ହୋଇଉଠିଥିଲା । କାରଣ ଦାସୁରାମ ପ୍ରଚଳିତ ଅପସଂସ୍କୃତି ବିରୋଧରେ ଏକ ସମାନ୍ତରାଳ ଲୋକାଭିମୁଖୀ , ସାମ୍ୟବାଦୀ ଲୋକ ସଂସ୍କୃତିର ଆରମ୍ଭ କରିସାରିଥିଲେ । ଶୋଷକ ଶାସକ ଯେଉଁ ଅପସଂସ୍କୃତି ବଳରେ ମାନବ

ସମାଜର ଚିନ୍ତନ ଶକ୍ତି/ଚିନ୍ତାଶିଳତା , ବିବେକ , ମାନବିକ ଚେତନାକୁ ଧ୍ୱଂସ କରିବାକୁ ଚେଷ୍ଟା କରେ , ତାକୁ ପ୍ରତିରୋଧ କରି ଗଣ ସଂସ୍କୃତି ଆଗେଇ ଚାଲେ । ତା'ର ପ୍ରଭାବ ଆଗରେ ଶୋଷକ ଶ୍ରେଣୀର ଅପସଂସ୍କୃତି ହାର ମାନେ । ଏହାଛଡ଼ା ଦାସୁରାମଙ୍କର ଲୋକପ୍ରିୟତା ତଥା ଶୋଷଣ କଷଣ ବିରୁଦ୍ଧରେ ଜନସାଧାରଣଙ୍କୁ ଏକତ୍ରିତ କରିବାର କ୍ଷମତା ଯୋଗୁଁ , ସେ ଶୋଷକ ଶାସକ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇଗଲେ । ଫଳରେ ତାଙ୍କୁ ପୁଣି ଥରେ ଗିରଫ କରିବାକୁ ସରକାର ବ୍ୟାକୁଳ ହୋଇଉଠିଲା । ଏଥିପାଇଁ ତାଙ୍କ ଗାଁରେ ଶୋଷକର ପାଳିତ ଗୁଣ୍ଡା ପୋଲିସ୍ ତାଙ୍କୁ ଖୋଜି ବୁଲିଲା । ଦାସୁରାମଙ୍କୁ ପରିବାର ଛାଡ଼ି ପୋଲିସ୍ ଠାରୁ ଲୁଚି ବୁଲିବାକୁ ପଡ଼ିଲା । ପୋଲିସ୍ ତାଙ୍କୁ ନପାଇ ତାଙ୍କ ପରିବାର ଉପରେ ଅତ୍ୟାଚାର କରି ତାଙ୍କୁ ମାନସିକ ଭାବରେ ଭାଙ୍ଗିବାକୁ ଚେଷ୍ଟା କରିଥିଲା । ମାତ୍ର ସେ ଥିଲେ ସଚ୍ଚା ବିପ୍ଳବୀ । ଶୋଷକ ଶାସକ ପାଖରେ ହାର ମାନିଥାନ୍ତେ ବା କିପରି ?

ଦାସୁରାମ ଗତ ସେପ୍ଟେମ୍ବର ୯ ତାରିଖରେ ଗୁଡ୍ରିପଙ୍ଗା ରେ ଝାଡ଼ାବାନ୍ତିରେ ଆକ୍ରାନ୍ତ ହୋଇଥିଲେ । କିନ୍ତୁ ପୋଲିସ୍ ପ୍ରଶାସନର ଦମନ ଯୋଗୁଁ ସେ ଡାକ୍ତରଖାନା ଯାଇ ଚିକିତ୍ସିତ ହୋଇପାରିଲେ ନାହିଁ । ଫଳରେ ସେ ଏହି ରୋଗରେ ମୃତ୍ୟୁବରଣ କଲେ । ମୃତ୍ୟୁ ବେଳକୁ ସେ ତାଙ୍କ ପରିବାର ତଥା ସହକର୍ମୀଙ୍କ ନିକଟରେ ମଧ ରହିପାରିଲେ ନାହିଁ । କାହାର ସେବା ଶୁଶ୍ରୁଷା ବା ସମବେଦନା ଟିକକ ବି ପାଇପାରିଲେ ନାହିଁ । ଶୋଷକ ଶାସକର ନିର୍ଦ୍ଦୟତାର ବାସ୍ତବରେ ଅନ୍ତ ନାହିଁ । ଦାସୁରାମଙ୍କ ଶହୀଦତ୍ୱ ପରେ ମଧ ପୋଲିସ୍ ପ୍ରଶାସନ ତାଙ୍କ ମୁଣ୍ଡରେ ଥିବା ପୁରସ୍କାର ପଛରେ ପଡ଼ିଗଲେ । ତାଙ୍କୁ ଧରେଇ ଦେବା ପାଇଁ ଯେଉଁ ପୁରସ୍କାର ରାଶି ସରକାର ଘୋଷଣା କରିଥିଲା , ତାକୁ କିଏ ପାଇବ ? ପ୍ରକୃତରେ ଏ ପୋଲିସ୍ ପ୍ରଶାସନ ପାଇଁ ଅର୍ଥ ହିଁ ସବୁକିଛି । ଏମାନଙ୍କ ଠାରୁ ମାନବିକତା ଆଶା କରିବା ନିହାତି ଭୁଲ୍ । କାରଣ ମାନବିକତା ତାଙ୍କର ଚରିତ୍ର ନୁହେଁ । ସେମାନେ ହେଉଛନ୍ତି ପରଜୀବି ମଲାଙ୍ଗ । ଅନ୍ୟର ରକ୍ତ ଶୋଷି ବଂଚିବା ତାଙ୍କର ଲକ୍ଷ୍ୟ ଓ ଚରିତ୍ର ।

ହୁଏତ ଶୋଷକ ଶାସକ ଖୁସିଥିବ ଯେ , ତାଙ୍କ ରାସ୍ତାର କଂଟା ଦାସୁରାମ ମୃତ । କିନ୍ତୁ ସେମାନେ ଭୁଲିବା ଉଚିତ୍ ନୁହେଁ 'ବିପ୍ଳବୀ ମରେ ସିନା , ବିପ୍ଳବ ମରେନା' । ଦାସୁରାମ ଯେଉଁ ବିପ୍ଳବୀ ଚିନ୍ତାଧାରାର ବ୍ୟକ୍ତି ଥିଲେ , ସେ ଚିନ୍ତାଧାରା ଆଜିର ନୁହେଁ । ଅନେକ ପୁରୁଣା , ଶ୍ରେଣୀ ସଂଗ୍ରାମର ଚିନ୍ତା , ସମାଜ ପରିବର୍ତ୍ତନ କରିବାର ଚିନ୍ତା । ତାକୁ ଦମନ କରିବା ପାଇଁ ଶୋଷକ ଶାସକ ଯେତେ ଚେଷ୍ଟା କରିଛି , ସେ ନିଆଁ ଭଳି ସେତେ ବେଶୀ ବ୍ୟାପିବାରେ ଲାଗିଛି । ଦାସୁରାମଙ୍କ ସ୍ଥାନରେ ଆଜି ହଜାର ହଜାର ଦାସୁରାମ ଶହିଦତ୍ୱ

ବରଣ କରିବା ପାଇଁ ଅପେକ୍ଷା କରିଛନ୍ତି । ଏହା ବିପ୍ଳବର ନିୟମ । ଏ ବିପ୍ଳବ ଗୋଟିଏ ବିଜ୍ଞାନ । ଆଉ ଶହିଦ ଦାସୁରାମ ପ୍ରକୃତ ସମାଜ ବିଜ୍ଞାନି , ଯାହାର ମୃତ୍ୟୁ ଅସମ୍ଭବ । ଦାସୁରାମଙ୍କ ସ୍ଥାନ ଅପୂରଣୀୟ । ମାତ୍ର ତାଙ୍କ ଦ୍ୱାରା ପ୍ରଚାରିତ ବିପ୍ଳବର ବାର୍ତା ତାଙ୍କ ପରେ ଆହୁରି ଦ୍ରୁତ ବେଗରେ ପ୍ରସାରିତ ହେବ ନିଶ୍ଚୟ ।



**ଦାସୁରାମଙ୍କ ଗାଁ : ଗୁଡ଼ରିପଙ୍କା**

# ଦାସୁଙ୍କ ସ୍ମୃତିରେ

**- ଉଦୟ**

ଲୋହିତ ସୂର୍ଯ୍ୟ ପରି ସାଂସ୍କୃତିକ ବୀର , ଆଦିବାସୀ ସମାଜର ଲଢୁଆ ପୁଅ ଦାସୁରାମ ମାଲେକା , ଓଡ଼ିଶା ବିପ୍ଳବି ଆନ୍ଦୋଳନ ର ନେତା , ଗୁଡ଼ିପାଙ୍ଗା ଗାଁର ଏକ ଗରିବ କୁଇ ଘରେ ଜନ୍ମ ନେଇଥିଲେ । ଗରିବୀ ପାଇଁ ଉଚ୍ଚ ଶିକ୍ଷା ଦେବାରେ ତାଙ୍କ ବାପା ମାଆ ସଫଳ ହେଲେ ନାହିଁ । ଆଦିବାସୀ ନିୟମରେ ସେ ଅତି ସାନ ବୟସରେ ବାହା ହୋଇଥିଲେ । ଚାଲିଥିବା ଠକ ଶୋଷଣ ଶାସନ ବିରୁଧରେ ୧୯୯୫ ମସିହାରେ ଗଜପତି ଜିଲ୍ଲାରେ ବିପ୍ଳବୀ ଆନ୍ଦୋଳନ ମୁଣ୍ଡ ଟେକିଲା । ସେ ଆଦିବାସୀ ଗରିବ ଲୋକଙ୍କ ସଂଗଠନ କୁଇ ଲାଓ୍ୱେଙ୍ଗା ସଂଘରେ ମିଶିଲେ । ରାୟଗଡ଼ା , ଗଜପତି ଜିଲ୍ଲାର ଗରିବ ଲୋକଙ୍କୁ ସଂଗଠିତ କଲେ । ଅନ୍ଧକାରରେ ଜୀବନ କାଟୁଥିବା କୁଇ ଓ ସରା ଲୋକଙ୍କୁ ଜନଯୁଦ୍ଧ ରାସ୍ତାରେ ଆଗେଇ ନେଲେ । ଜଙ୍ଗଲ ସଂପଦ ଲୁଟି ନେଇଯାଉଥିବା ଡକାୟତ ମାନଙ୍କୁ, ଆଦିବାସୀ ଗରିବ ଲୋକର ପାଚିଲା ଫସଲ ସବୁ ଠକି ନେଉଥିବା ସାହୁକାର ମାନଙ୍କୁ , ଆଦିବାସୀର ରକ୍ତ ପାଣି କରି ସମତଳ କରିଥିବା ବିଲକୁ ଛଡ଼େଇ ନେଉଥିବା ଠକ ଟାଉଟର ଜମିଦାରମାନଙ୍କୁ ଗୋଡ଼େଇ ଗୋଡ଼େଇ ମାରିବା ପାଇଁ ଗରିବ ଲୋକଙ୍କୁ ସେ ଗୀତ ଜରୀଆରେ ଡାକରା ଦେଲେ । ଜଙ୍ଗଲ ସଂପଦ ଉପରେ ଆଦିବାସୀ ଲୋକଙ୍କ ଅଧିକାର ସାବ୍ୟସ୍ତ କଲେ । ଫରେଷ୍ଟର୍ , ରେଂଜର୍ ମାନଙ୍କୁ ତଡ଼ି ଦେଲେ । ହାଟରେ ଆଦିବାସୀର ଜିନିଷ ପତ୍ର ସବୁ ଠକି ନେଇ ଯାଉଥିବା ସାହୁକାର ମାନଙ୍କୁ ଜବତ୍ କଲେ ।

ନାରାୟଣପୁର , ଡାବରକଣାରେ ମାଧବ ଶୁଣ୍ଡି , ଗରିବ ଲୋକଙ୍କୁ ଲୁଂଠନ କରିରଖିଥିବା ଜମିରେ ଲାଲ୍ ପତାକା ପୋତି ଲୋକଙ୍କୁ ଜମି ବାଂଟିବା ଦିଗରେ ଆନ୍ଦୋଳନ ଗଢ଼ିଲେ । ଜନ ଆନ୍ଦୋଳନ ବିରୁଦ୍ଧରେ ଓଡ଼ିଶା ସରକାର ପ୍ରତି ଗାଁରେ ପୋଲିସ କ୍ୟାଂପ ରଖିଥିଲା । ଲୋକଙ୍କ ଉପରେ ଦମନ ଚାଲିଥିଲା । ସେ ଦମନର ବିରୋଧ କରି ପ୍ରତିରୋଧ କରିବା ପାଇଁ , ମାନ୍ଦ୍ରାବାଜୁ ଲୋକଙ୍କୁ ଚେତନା ଦେବାରେ ଦାସୁଙ୍କ ଗୀତର ଭୂମିକା ରହିଛି । ମାଝିଗୁଡ଼ା ପୁଲିସ୍ କ୍ୟାଂପ ଉପରେ ଆକ୍ରମଣ କରି ମାନ୍ଦ୍ରାବାଜୁର ଆଦିବାସୀ ଓଡ଼ିଶା ସରକାରଙ୍କୁ ସେମାନଙ୍କ ବୀରତ୍ୱ ଦେଖେଇଲେ । ସେ ଘଟଣାରେ ୮ ଜଣ ମାନ୍ଦ୍ରାବାଜୁ କମ୍ରେଡ୍ ଶହୀଦ୍ ହେଲେ । ଶହିଦଙ୍କ ରକ୍ତ ବ୍ୟର୍ଥ ହେବ ନାହିଁ ବୋଲି ଗାଇ , ଗୀତରେ ଗୀତରେ ରକ୍ତଅଂଜୁଳା କରି ବାଶଦାରା ଅଂଚଳରେ ଦାସୁ ଲଢେଇ ତେଜବାନ କରାଇଲେ । ରକ୍ତ ସଂପର୍କ ନାହିଁ ,ଶ୍ରେଣୀ ସଂପର୍କ ଆଧାରରେ ଗୋଟିଏ ହାତରେ କଲମ ,

ଆଉ ଗୋଟିଏ ହାତରେ ଖଜଣି ଓ ଗୋଡ଼ରେ ଘୁଙ୍ଗୁର ବାନ୍ଧି ଶହିଦଙ୍କ ତ୍ୟାଗ ଗୀତ ଲେଖି ଦାସୁରାମ ପ୍ରତି ଗାଁକୁ ପ୍ରତି ଘରକୁ ବିପ୍ଲବର ସନ୍ଦେଶ ଦେଇଗଲେ । ସେ ରହିଲେ ଲୋକଙ୍କ ମନରେ , ତାଙ୍କ ଘରେ । କୁଇ ବୁମ୍ଭ ଗାଡ଼ି ରୂପରେ ସେ ସଭିଙ୍କ ଚାଙ୍ଗୁ ହେଲେ । ଗରିବ ଲୋକଙ୍କୁ ଶ୍ରେଣୀ ରାଜନୀତି ଶିଖେଇଲେ , ଜମି ଆନ୍ଦୋଳନ କରେଇଲେ , ସେ ଜମିରେ ଲାଲ୍ ପତାକା ପୋତିଲେ । ଦାସୁର ଲଢ଼େଇ ଗୀତ ଜମିଦାର ଦେହରେ ସବୁ ଘା' ହେଇଗଲା । ଦାସୁର ଆନ୍ଦୋଳନ ଶକ୍ତି ଦେଖି ଲୁଂଠନକାରୀ ସରକାର , ରାୟଗଡ଼ାରୁ ଆନ୍ଧ୍ରା ପୋଲିସ୍ ଦ୍ୱାରା ତାଙ୍କୁ ଉଠେଇ ନେଇ ଆନ୍ଧ୍ରା ଜେଲ୍‌ରେ ଭର୍ତି କଲେ । ମାଡ଼ ଖାଇବା ସତ୍ୱେ , ଦାସୁ ଆନ୍ଦୋଳନର ଗୁପ୍ତ ବିଷୟ କିଛି କହିଲେ ନାହିଁ । ଆଖିକୁ ଯେପରି ଆଖିପତା ରକ୍ଷାକରୁଛି , ସେ ସେହିପରି ବିପ୍ଳବୀ ମାନଙ୍କୁ ରକ୍ଷାକଲେ । ଅନ୍ଧାର ଘରେ ସରକାର ବିପ୍ଳବୀ ମାନଙ୍କୁ ଆଗୁଳି ପାରିବ ନାହିଁ ବୋଲି ସେ ଘୋଷଣା କଲେ । ଆର୍- ଉଦୟଗିରି ଜେଲ୍‌ରେ ପଶି ସେ ଜେଲ୍‌ର କେତେକ ସାଧାରଣ ଲୋକଙ୍କୁ ବିପ୍ଳବୀ ରାଜନୀତି ଶିକ୍ଷା ଦେଲେ ।

ଜେଲ୍‌ରେ କୁଇ ଲିପି ବାହାର କଲେ । ଅନ୍ଧାର ଘରେ ଶୁଆ ପରି ତାଙ୍କର ଗୀତ ଶୁଣି ଶହ ଶହ ବିପ୍ଳବି ଲୋକ ପାଳି ଧରିଲେ । ସେ ଗୀତକୁ ଶୁଣି ଓଡ଼ିଶା ସରକାର ହୃଦୟରେ ନିଆଁ ଚେଙ୍କ ଲାଗିଲା । ସେଥିପାଇଁ ହିଁ ସରକାର ତାଙ୍କୁ ଜେଲ୍ ଦଣ୍ଡ ଦେଲା । ଖାଦ୍ୟ , ଗୃହ , କପଡ଼ା , ପାଣି ନପାଇ ଆଦିବାସୀ ଲୋକ ଭୋକରେ ମରୁଛନ୍ତି । ନ୍ୟାୟ ପାଇଁ ଆନ୍ଦୋଳନ କରୁଥିବା ଲୋକଙ୍କୁ ନକ୍ସଲାଇଟ୍ ଉଗ୍ରବାଦୀ ବୋଲି କହି , ସିଆର୍‌ପିଏଫ୍ , ଏଲ୍‌ଆଇଟି ଗ୍ରେହାଉଣ୍ଡସ୍ , ଆଇଆର୍‌ବି ଓ ପୋଲିସ୍ ମିଶି ଲୋକଙ୍କୁ ମାରୁଛନ୍ତି । ଗତ ଦିନରେ ଆଦିବାସୀ ଲୋକମାନେ ମାହାମାରୀରେ ଶହ ଶହ ସଂଖ୍ୟାରେ ମରିଗଲେ । ଦାସୁଙ୍କ ଜନ୍ମସ୍ଥାନ ଗୁଡ଼ିପଙ୍କା ଗାଁର ଅନେକ ଲୋକ ମୃତ୍ୟୁ ଅବସ୍ଥାରେ ଥିବା ଖବର ଶୁଣି , ଲୋକଙ୍କ ଡାକ୍ତର ଭାବେ ଚିକିତ୍ସା କରିବା ପାଇଁ ସେ ଗାଁକୁ ଗଲେ । ବୈଦ୍ୟ ପରି ଲୋକଙ୍କୁ ଔଷଧ ଦେଲେ ।

ହଠାତ୍ ତାଙ୍କର ମୃତ୍ୟୁ ହେଲା । ଏ ଶୋଷକ ସରକାର ତା'ର ବିଫଳ ଚିକିତ୍ସା ବ୍ୟବସ୍ଥା ଦ୍ୱାରା ତାଙ୍କୁ ହତ୍ୟା କଲା । ତାଙ୍କ ଆନ୍ଦୋଳନ ଶକ୍ତି ଦେଖି , ତାଙ୍କୁ ଧରିବା ପାଇଁ ଏ ଠକ ସରକାର ତାଙ୍କ ମୁଣ୍ଡର ମୂଲ୍ୟ ଏକ ଲକ୍ଷ ଟଙ୍କା ରଖିଥିଲା । ତାଙ୍କୁ ଧରିବା ପାଇଁ ଶହ ଶହ ପୋଲିସ୍ ଫୋର୍ସ ଜଙ୍ଗଲରେ ଗଛ ପାହାଡ଼ ଏବଂ ଗାଁ ଗାଁକୁ ରାତି ଦିନ ଖୋଜି ବୁଲିଲେ । ମାତ୍ର ସେ ପାଣିରେ ମାଛ ପରି ଲୋକମାନଙ୍କ ମଝିରେ ମିଶି ରହିଲେ । ଶହ ଶହ ପୋଲିସ୍ କୁକୁରମାନେ ତିନି ବନ୍ଧ ପାଣି ପିଇଲେ , ମାତ୍ର ତାଙ୍କୁ ଧରି ପାରିଲେ ନାହିଁ ।

କମ୍ରେଡ୍ ଦାସୁରାମ ଓରଫ୍ ପାଙ୍ଗି ଦାଦାଙ୍କ ମରଣ ଖବର ଶୁଣି ପାହାଡ଼ ଝରଣା ଝୁରି ହେଲେ । ପକ୍ଷୀ ତା'ର ପିଲାମାନଙ୍କୁ ପାସୋରି ଗଲା । ଜନ୍ମ ଦେବା ଗାଁ ତା' ଜନ୍ମ କଲା ପୁଅ କାହିଁ ବୋଲି ପଚାରୁଛି । ତାଙ୍କ ଗୀତକୁ ପାଳି ଧରୁଥିବା ପକ୍ଷୀର ମାଆ , ଶୁଆ ଗୀତ କାହିଁ ବୋଲି ପଚାରୁଛି । ତାଙ୍କ ଗୀତ ଶୁଣି ମାଆ ବିପ୍ଳବୀ ବୀର କାହିଁ ବୋଲି ପଚାରୁଛି । ତାଙ୍କରି ପାଦରେ ପାଦ ମିଳାଇ ଚାଲୁଥିବା ଭାଇ ଭଉଣୀ , ମାଷ୍ଟର କାହିଁ ବୋଲି ପଚାରୁଛନ୍ତି । ଆମେ ଆକାଶର ତାରା ଗହଣରେ ମିଶେଇବୁ ତାଙ୍କୁ , ପୂର୍ବ ଦିଗରେ ସୂର୍ଯ୍ୟ ଉଦୟ କରି ଦେଖେଇବୁ । ତାଙ୍କୁ ଗେରିଲା ଜୋନ୍‌ରେ , ଲାଲ୍ ପତାକାରେ ଦେଖିବୁ । କମ୍ରେଡ୍ ମାଲେକା ତୁମର ମରଣ ନାହିଁ , ତୁମ ଜୀବନ ଅମର ରହିବ । ତୁମ ସ୍ୱପ୍ନ ପାଇଁ ଶହ ଶହ ପିଡ଼ୀତ ଲୋକ ଟାଙ୍ଗିଆ , କାତି , ଧନୁଶର ଧରି ଲାଲ୍ ସେନାରେ ବାହାରିବେ । ଶହ ଶହ ଗେରିଲା ସେନା ବାହାରିଲେ ତୁମ ସ୍ୱପ୍ନ ସଫଳ ହେବ । ଏ ମାଟିରେ ଗରିବର ଶାସନ ଆସିବ ।



*ଦୁଃଖରେ କମ୍ରେଡ୍ ଦାସୁରାମଙ୍କ ପୁଅ ନସନ୍*

# ଦାସୁଙ୍କୁ ମନେ ପକେଇ

-ପ୍ରକାଶ

ଗୁଡ଼ିପଙ୍କା ଗାଁର କମ୍ରେଡ଼ ଦାସୁରାମ ମାଲେକା ଜଣେ କୁଇ ନେତା । ୧୯୯୫ ଠାରୁ ସେ ସଂଗଠନ କାମ ଆରମ୍ଭ କରିଥିଲେ । କମ୍ରେଡ୍ ଦାସୁରାମ ମାଲେକା କେବେବି ପଛକୁ ଫେରିବା ପାଇଁ ଚାହିଁଲା ନାହିଁ । ଲୋକଙ୍କ ପାଇଁ କେତେ କଷ୍ଟ ହେଲେ ବି ତାଙ୍କୁ ଛାଡ଼ି ପଛକୁ ଫେରିଲେ ନାହିଁ । ଲୋକଙ୍କ ପାଇଁ ମୋ ଜୀବନ ଚାଲିଗଲେ ସୁଦ୍ଧା , ଲୋକଙ୍କୁ ଛାଡ଼ି ପଛକୁ ଫେରିବି ନାହିଁ ବୋଲି ସେ ଲୋକଙ୍କୁ ବୁଝାଉଥିଲେ । ତାଙ୍କୁ ମାତ୍ର ୩୪ ବର୍ଷ ବୟସ ହୋଇଥିଲା । ସେ କେବଳ ୭ମ ଶ୍ରେଣୀ ଯାଏଁ ପାଠ ପଢିଥିଲେ । କିନ୍ତୁ ଦେଶ ଓ ଜନତାଙ୍କ କାମ ସବୁ ଖୁବ୍ ଗୁରୁତ୍ୱ ଦେଇ କରୁଥିଲେ । କେତେ କଷ୍ଟ କେତେ ଦୁଃଖ ସହି ବି ଲୋକଙ୍କ ପାଇଁ କାମ କରୁଥିଲେ । ନିଜ ଘର , ବାପା , ମାଆ , ସ୍ତ୍ରୀ ଓ ପିଲାମାନଙ୍କୁ ଛାଡ଼ି ଗରିବ ଲୋକଙ୍କ ପାଇଁ କାମ କରିବା ପାଇଁ ବାହାରି ଆସିଥିଲେ । ଗାଁ ଗାଁରେ ଲୋକଙ୍କ ପାଖକୁ ଯାଇ ଗୀତ ନାଚ କରି ଲୋକଙ୍କୁ ଶିକ୍ଷା ଦେଉଥିଲେ ଓ କୁଇ ଲୋକର ସମସ୍ୟା ବୁଝେଇକି ଲୋକଙ୍କୁ ସଂଗଠନ ପାଖକୁ ଆଣିଥିଲେ ।

୨୦୦୩ ମସିହାରେ ରାୟଗଡ଼ା ର୍‍ୟାଲି ପାଇଁ ରାୟଗଡ଼ା କଲେକ୍ଟର ପାଖରୁ ଅନୁମତି ଆଣିବା ପାଇଁ ଯାଇଥିବା ସମୟରେ, କମ୍ରେଡ଼ ଦାସୁରାମଙ୍କୁ ରାୟଗଡ଼ାରେ ଆନ୍ଧ୍ର ପୋଲିସ ଗିରଫ୍ କରିନେଇଗଲେ । କିନ୍ତୁ ଜେଲ୍‌ରେ ନରଖି ବାହାରେ ସାତ ଦିନ ରଖି ବହୁ ନିର୍ଯ୍ୟାତନା ଦେଇ ପଚାରିଥିଲେ ବିପ୍ଳବୀ ପାର୍ଟି ବିଷୟରେ ଜାଣିଥିବା କଥା କହିଦିଅ । ହେଲେ ସେ ସବୁ ଯନ୍ତ୍ରଣା ସହି କିଛି କହିନଥିଲେ । ସେ ଭାବିଥିଲେ ମୁଁ ଜଣେ ମୁରବୀ , ତେଣୁ ସଂଗଠନର କଥା କିଛି କହିବି ନାହିଁ । ଜେଲ୍‌ରେ ରହି କୁଇଲିପି ବାହାର କରିଥିଲେ । କେତେ ଗୁଡ଼ିଏ ଗୀତ ମଧ ରଚନା କରିଥିଲେ । ଜେଲ୍‌ରୁ ଘରକୁ ଫେରିଲା ପରେ ସେ ଖୋଜି ଖୋଜି ପୁଣି ବିପ୍ଳବୀ ମାନଙ୍କ ପାଖରେ ପହଂଚିଥିଲେ । ଲୋକଙ୍କ ପାଇଁ ପ୍ରାଣତ୍ୟାଗ କରିବି ପଛେ ସଂଗଠନ ଛାଡ଼ିବି ନାହିଁ କହିବାରୁ ହିଁ , ସଂଗଠନ ଦାସୁରାମଙ୍କୁ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେଇଥିଲା । ସେହି ଦିନଠାରୁ ସେ ଗାଁ ଗାଁ ବୁଲି ଲୋକଙ୍କୁ ବୁଝେଇକି କହିଲେ , ଆସ ଆମେ ଗରିବ ଲୋକ ଏକାଠି ହେବା । ରାୟଗଡ଼ା , ଗଜପତି ଓ ଫୁଲବାଣୀ ରେ ବାସ କରୁଥିବା ଗରିବ ଆଦିବାସୀ ସମସ୍ତେ ଆମେ ଦେଶ ପାଇଁ ଲଢେଇ କରିବା । ସାମ୍ରାଜ୍ୟବାଦୀ ଦଲାଲ୍ ପୁଁଜିପତି ମାନଙ୍କୁ ହଟେଇବା ପାଇଁ ସଭିଏଁ ଆଗେଇ ଆସ , ଏହି କଥା କମ୍ରେଡ୍ ଦାସୁରାମ ଲୋକଙ୍କୁ ବୁଝେଇକି କହୁଥିଲେ । ଆମେ ଏତେ ଦୁଃଖ କଷ୍ଟ ସହି କେତେ ଦିନ ଥିବା ? ଆମ ଗରିବ ଲୋକଙ୍କ ପାଇଁ ଆସ ଅସ୍ତ୍ରଶସ୍ତ୍ର ଧରିବା । ଆସ ସାଥୀ

ଭାଇ ମାନେ ଆମେ ଏହି ଲଢ଼େଇରେ ଯୋଗଦେବା ବୋଲି ଗାଁ ଗାଁରେ ଗୀତ ନାଚ କରିକି ଗରିବ ଲୋକଙ୍କୁ ବୁଝେଇଥିଲେ ।

ଦିନେ ଦାସୁରାମ ମାଲେକା ଏକ ଗାଁରେ ମିଟିଙ୍ଗ୍ କରୁଥିଲେ । ଜଣେ ପୋଲିସ୍ ଖବରଦାତା ପୋଲିସ୍ କୁ ଖବର ଦେଲା ଯେ ସେ ଗାଁରେ ଦାସୁ ଅଛି ବୋଲି । ପୋଲିସ୍ ଆସି ଗାଁରେ ପହଁଚି ଗାଁ ଲୋକମାନଙ୍କୁ ଦାସୁ କାହିଁ ବୋଲି ପଚାରିଥିଲା ଓ ମାଡ଼ ମାରିଥିଲା । ହେଲେ କେହି ବି ଦାସୁଙ୍କ ବିଷୟରେ ପୋଲିସ୍କୁ କହିନଥିଲେ । ତା'ପରେ ସେମାନଙ୍କୁ ଥାନାକୁ ନେଇ ପୁଣି ମାଡ଼ ମାରି ପଚାରିଥିଲା ଯେ ଦାସୁକୁ ଧରେଇ ଦିଅ , ତୁମକୁ ଲକ୍ଷେ ଟଙ୍କା ଦିଆଯିବ । ହେଲେ ଲୋକମାନେ କିଛି କହିନଥିଲେ । ସରକାର ତାଙ୍କୁ ଧରିବା ପାଇଁ ଲୋକଙ୍କୁ ନିର୍ଯ୍ୟାତନା ଦେଇ, ଖବରଦାତା ବିଛାଇ , ତା' ମୁଣ୍ଡପିଛା ଲକ୍ଷେ ଟଙ୍କା ଘୋଷଣା କରି ସୁଦ୍ଧା ତାଙ୍କୁ ଧରି ପାରିନଥିଲେ । ହେଲେ ଗତ ସେପ୍ଟେମ୍ବର ୧୦ ତାରିଖ ୯.୩୦ ମିନିଟ୍ ରେ ସେ ଚିକିତ୍ସା ନପାଇ ହଇଜାରେ ଶହିଦ ହେଲେ । ପ୍ରିୟ କମ୍ରେଡ୍ ଓ ସାଥି ଦାସୁରାମ ମାଲେକା ତୁମକୁ ମୋର ଲାଲ୍ ସଲାମ୍ । ତୁମେ ସବୁବେଳେ ମୋ ମନରେ ରହିବ , ମୋ କାମ ପାଇଁ ପ୍ରେରଣା ଦେଇ ଚାଲିବ ।



**ଡାକ୍ତରଖାନାରୁ ଫେରିବା ବାଟରେ ଦାସୁଙ୍କ ପତ୍ନୀ ଗୋହିଙ୍ଗାଲୁ ଓ ସାନ ଝିଅ**

# ଦାସୁ ଏକ ଅଭୁଲା ସ୍ମୃତି

- ସୀମା

ଓଡ଼ିଶାର ଗଜପତି ଜିଲ୍ଲାର ରାଇପଙ୍କା ପଂଚାୟତ ଅନ୍ତର୍ଗତ ଗୁଡ୍‌ରିପଙ୍କା ଗାଁ । ସେଇ ଗାଁର ଏକ ଗରିବ କୁଇ ଆଦିବାସୀ ପରିବାରରେ ଦାସୁରାମ ମାଲେକାଙ୍କର ଜନ୍ମ । ଗଜପତି ଜିଲ୍ଲା ଏକ ଆଦିବାସୀ ବହୁଳ ଜିଲ୍ଲା । ଯେଉଁଠି ଅଧିକାଂଶ କୁଇ ଓ ସରା ଆଦିବାସୀ ବସବାସ କରନ୍ତି । ଏହି ଜିଲ୍ଲା ସବୁ କ୍ଷେତ୍ରରେ ପଛୁଆ । କିନ୍ତୁ ସେହି ପଛୁଆ ଜିଲ୍ଲାରେ ଦାସୁରାମଙ୍କ ଭଳି ଏକ ମହାନ୍ ବିପ୍ଳବୀ କବିଙ୍କ ସୃଷ୍ଟି ଓ ବିକାଶ ହୋଇଥିଲା । ପିଲାବେଳୁ ସେ ଦୁଃଖ , କଷ୍ଟ ଓ ଦାରିଦ୍ର୍ୟକୁ ଖୁବ୍ ନିକଟରୁ ଦେଖିଛନ୍ତି ଏବଂ ତାରି ଭିତରେ ବଢ଼ିଛନ୍ତି । ସେ ଯେତେବେଳେ ୮ ବର୍ଷର ହୋଇଥିଲେ , ସେତେବେଳେ ତାଙ୍କ ବାପାଙ୍କୁ ହରାଇଥିଲେ । ଆଉ ସେବେଠାରୁ ତାଙ୍କ ଉପରେ ତାଙ୍କ ପରିବାର ଭରଣ ପୋଷଣର ବୋଝ ଲଦି ହୋଇଯାଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଦିବାସୀ ଅଧ୍ୟୁଷିତ ଅଂଚଳ ଗୁଡ଼ିକରେ ଶିକ୍ଷାର ଅବସ୍ଥା କଥା ସମସ୍ତେ ଭଲ ଭାବେ ଜାଣନ୍ତି । ତା ସତ୍ୱେ ସେ ୭ମ ଶ୍ରେଣୀ ଯାଏଁ ପାଠ ପଢ଼ିଥିଲେ । ହେଲେ ଆର୍ଥିକ ଅନଟନ ଯୋଗୁଁ ସେତିକିରେ ତାଙ୍କ ପାଠପଢ଼ାରେ ଡୋରୀ ବନ୍ଧା ହୋଇଥିଲା । କିନ୍ତୁ , ସେସବୁ ତାଙ୍କ ଭିତରେ ଥିବା ଅସଲ ପାଠକୁ ବାନ୍ଧି ପାରିନଥିଲା । ସେ ଜଣେ ଭଲ ସଂଗଠକ ଥିଲେ । ତାଙ୍କ ଗାଁ ଓ ଆଖପାଖ ଅନେକ ଗାଁର ଲୋକମାନଙ୍କୁ ଏକାଠି କରି ସେମାନଙ୍କୁ ସମାଜରେ ଚାଲିଥିବା ଅନ୍ୟାୟ , ଅତ୍ୟାଚାର ବିରୁଦ୍ଧରେ ସଂଗଠିତ କରିଥିଲେ । ଏ ଅତ୍ୟାଚାର ପଛରେ ସରକାରର ଭୂମିକା ସଂପର୍କରେ ଅନେକ କଥା ଆଲୋଚନା କରୁଥିଲେ । ନିଜେ ଏହିସବୁ ବିଷୟକୁ ଗୀତ ମାଧମରେ ଗାଇ , ବାଜା ବଜେଇ ଏବଂ ନାଚକରି ଜନଗଣଙ୍କ ମଧରେ ପ୍ରଚାର କରୁଥିଲେ । ବିପ୍ଳବୀ ଆନ୍ଦୋଳନ ସଂସ୍ପର୍ଶରେ ଆସିବା ଦିନ ଠାରୁ ସେ ସୁପ୍ତ ସମାଜକୁ ଜାଗ୍ରତ କରିବାର କାମ ଆରମ୍ଭ କରିଦେଇଥିଲେ ।

ଆଦିବାସୀ ଲୋକମାନେ ଖୁବ୍ ନାଚ ଗୀତ ପ୍ରିୟ । ଦାସୁ ବୁଝିସାରିଥିଲେ , ସମାଜରେ ଚାଲିଥିବା ସବୁ କଥା ସେମାନଙ୍କୁ ଜଣେଇ ସେମାନଙ୍କୁ ଜାଗ୍ରତ କରିବାକୁ ହେଲେ , ନିଜ ମାତୃଭାଷାରେ ଗୀତ ଲେଖିବାକୁ ହେବ । ଆଉ ଏ କଳାରେ ସେ ଥିଲେ ସିଦ୍ଧହସ୍ତ । ଆଜିର ସାମ୍ରାଜ୍ୟବାଦୀ ତଥା ସାମନ୍ତବାଦୀ ସଂସ୍କୃତି ପ୍ରଭାବରେ ପୁରୁଣା ସଂସ୍କୃତି ବିଶେଷକରି ଆଦିବାସୀ ସଂସ୍କୃତି ସବୁ ଲୋପ ହେବାକୁ ଲାଗିଲାଣି । ଏକଥା ଅତି ପିଲାବେଳୁ ଦାସୁରାମ୍ ବେଶ୍ ଭଲଭାବେ ଅନୁଭବ କରିପାରୁଥିଲେ । ତେଣୁ ଏହି ସାମ୍ରାଜ୍ୟବାଦୀ-ସାମନ୍ତବାଦୀ ସଂସ୍କୃତି କବଳରୁ ନିଜ ସଂସ୍କୃତିକୁ ବଂଚେଇବା ପାଇଁ ସେ ଆରମ୍ଭ କରିଦେଇଥିଲେ

ଉଦ୍ୟମ । ସମଗ୍ର ଦେଶରେ ଥିବା ଅବହେଳିତ ଆଦିବାସୀ , ବିଶେଷ କରି କୁଇ ମାନଙ୍କର ସଂସ୍କୃତି କିପରି ଥିଲା ଏବଂ ଅପସଂସ୍କୃତିର ପ୍ରବେଶ ପରେ କିପରି ହେଲାଣି ; ଏସବୁ କଥାକୁ ଦାସୁ ଖୁବ୍ ଗୁରୁତ୍ୱ ଦେଇ ଅଧ୍ୟୟନ କରୁଥିଲେ ଏବଂ ନୂତନ ତଥ୍ୟ ସବୁ ଜନଗଣଙ୍କ ସାମନାକୁ ଆଣିବାରେ ସକ୍ଷମ ହୋଇଥିଲେ ।

ତାଙ୍କ ଗୀତ ଓ ନାଚ ମାଧ୍ୟମରେ ବିପ୍ଳବୀ ଆନ୍ଦୋଳନର ପ୍ରଚାର ଓ ପ୍ରସାର ବଢ଼ିଚାଲିଲା । ସେ ପ୍ରାୟ ଶହେରୁ ଊର୍ଦ୍ଧ୍ୱ ଗୀତ କୁଇ ଭାଷାରେ ରଚନା କରିଛନ୍ତି । ତାଙ୍କର ଦୁଇଟି ଗୀତ କ୍ୟାସେଟ୍ 'କୁଇ ଦିନା ବୁମ୍ଭୁ ଗାଡ଼ି ରଣ୍ଡି ଓ ରିଣ୍ଡି' ଆନ୍ଦୋଳନ ଅଂଚଳରେ ଖୁବ୍ ଲୋକପ୍ରିୟ ଅଟେ । ସେ ଚାଷୀ ମୂଲିଆ ସମିତିର ଜଣେ ସକ୍ରିୟ ସଦସ୍ୟ ଥିଲେ । ରାୟଗଡ଼ା-ଗଜପତି ଜିଲ୍ଲାରେ ଚାଲିଥିବା ଜମି ଆନ୍ଦୋଳନରେ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଏହି ଜମି ଆନ୍ଦୋଳନ ଯୋଗୁଁ ଜମିଦାର ଓ ଶୋଷକ ସରକାର ଖୁବ୍ ଭୟଭୀତ ହୋଇ ଜୋରଦାର୍ ଦମନ ଚଳାଇଥିଲା । ହେଲେ ସେଥିରେ ସେ ଦବି ଯାଇନଥିଲେ । ପରିବାରର ଦୁଃଖ କଷ୍ଟ ଅପେକ୍ଷା ଜନଗଣଙ୍କର ଦୁଃଖକଷ୍ଟ ତାଙ୍କୁ ଅଧିକ ବ୍ୟଥିତ କରୁଥିଲା । ତାଙ୍କ ବୃଦ୍ଧା ମାଆ ଓ ପତ୍ନୀ ତାଙ୍କର ପରିବାରର ଦାୟିତ୍ୱ ତୁଲାଉ ଥିଲେ ଏବଂ ଦାସୁଙ୍କୁ ଜନଗଣଙ୍କ ପାଇଁ ସମର୍ପି ଦେଇଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ଭାଷାରେ "ମୋ ମାଆ ମହାନ୍ , କାରଣ ସେ ମୋତେ ସବୁ କାମରେ ସାହାଯ୍ୟ କରେ । ତେଣୁ ତା ଯୋଗୁଁ ମୁଁ ବାହାରେ ବୁଲି କାମ କରିବାକୁ ସମର୍ଥ ହେଉଛି । ମୋ ସ୍ତ୍ରୀ ବହୁତ ପରିଶ୍ରମୀ ଓ ସରଳ ମଧ୍ୟ । କୁଇ ଆଦିବାସୀ ସମାଜରେ ପ୍ରଚଳିତ କୁସଂସ୍କାର ଯୋଗୁଁ ଆଦିବାସୀ ମହିଳା ମାନଙ୍କୁ ବିଲ ହଳ କରିବା ଓ ଘର ଛପର କରିବା ପାଇଁ ବାରଣ କରାଯାଇଥାଏ । ତେଣୁ ବିଲ ହଳ କରିବା , ଘର ଛପର କରିବା ଓ ବଗଡ଼ ହଣାକୁ ଛାଡ଼ି ଦେଲେ ପରିବାରର କୌଣସି ଆବଶ୍ୟକତା ସଂପର୍କରେ ସେମାନେ ମୋ ଉପରେ ନିର୍ଭର କରନ୍ତି ନାହିଁ ।"

ଦାସୁର ବିପ୍ଳବୀ କାର୍ଯ୍ୟର ଲୋକପ୍ରିୟତା ପୋଲିସ୍ ଓ ପ୍ରଶାସନର ନିଦ ହଜେଇ ଦେଇଥିଲା । ୨୦୦୩ ମସିହା ଫେବୃଆରୀ ୬ ତାରିଖ ଦିନ ଆନ୍ଧ୍ରର ଗ୍ରେହାଉଣ୍ଡସ୍ ପୋଲିସ ତାଙ୍କୁ ରାୟଗଡ଼ା ରେଳଷ୍ଟେସନ୍ ପାଖରେ ଥିବା ମା' ମଙ୍ଗଳା ହୋଟେଲ୍ ପାଖରୁ ଅପହରଣ କରି ପାର୍ବତୀପୁର ନେଇଯାଇଥିଲା । ସେଠାରେ ଆନ୍ଧ୍ର ପୋଲିସ ତାଙ୍କୁ ବହୁ ମିଥ୍ୟା କେଶ୍‌ରେ ଜଡ଼ିତ କରାଇ ଅକଥନୀୟ ଅତ୍ୟାଚାର କରିଥିଲା । ଓଡ଼ିଶା ପୋଲିସ୍ ଏଇ ସୁବର୍ଣ୍ଣ ସୁଯୋଗ ଖୋଜୁଥିଲା ଏବଂ ଏହାର ଫାଇଦା ଉଠାଇ ତାଙ୍କୁ ଆହୁରି ଅନେକ ମିଥ୍ୟା କେଶ୍‌ରେ ଜଡ଼ିତ କରାଇ ଓଡ଼ିଶା ଆଣିଥିଲା । ସେ ଗିରଫ୍ ହେବା କଥା ବ୍ୟାପି ଯାଇଥିଲା ଚାରିଆଡ଼େ । ଅନେକ କବି, ଲେଖକ , ବୁଦ୍ଧିଜୀବ ତାଙ୍କ ଗିରଫଦାରୀ

ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କୁ ଜେଲ୍‌ରେ ଯେତେବେଳେ ମାନବାଧିକାର କମିଟି ଭେଟିଥିଲା , ସେତେବେଳେ ମଧ ତାଙ୍କ ପିଠିରେ ସବୁ ମାଡ଼ ଦାଗ ରହିଥିଲା । ଏତେ ଅତ୍ୟାଚାରିତ ହୋଇ ମଧ ବିପ୍ଳବୀ ଆନ୍ଦୋଳନକୁ କ୍ଷତି ପହଂଚାଇଲା ଭଳି କିମ୍ବା ତାଙ୍କ ସହଯୋଗୀ ମାନଙ୍କର କ୍ଷତି ହେଲା ଭଳି ଗୋଟିଏ ପଦ ମଧ ଦାସୁରାମଙ୍କ ମୁହଁରୁ ବାହାରିନଥିଲା । ତାଙ୍କ ମାଆ ବାରମ୍ବାର ଯାଇ ତାଙ୍କୁ ଜେଲ୍‌ରେ ଭେଟ ହେବାକୁ ଚେଷ୍ଟା କରୁଥିଲେ । ଯଦିଓ ସେତେବେଳେ ପୋଲିସ୍ ତାଙ୍କୁ ଭେଟ ହେବାକୁ ଦେଉନଥିଲା । ଜେଲ୍‌ରେ ଥିବା ବେଳେ ବନ୍ଦୀ ଥିବା ଅନ୍ୟ ସାଥୀ ମାନଙ୍କୁ ସେ ସଂଗଠିତ କରୁଥିଲେ । ସେଇ ୧୬ ମାସର ବନ୍ଦୀ ଜୀବନ ଭିତରେ ସେ ସୃଷ୍ଟି କରିଥିଲେ 'କୁଇ ଲିପି' । ଜେଲ୍ ଭିତରେ ରହି ବିପ୍ଳବୀ ଆନ୍ଦୋଳନକୁ କିପିରି ଆହୁରି ମଜଭୁତ କରିହେବ, ସେଥିପାଇଁ ସେ ଅନ୍ୟ ସାଥୀ ମାନଙ୍କ ସହ ଆଲୋଚନା କରୁଥିଲେ । ଜେଲ୍‌ରୁ ବାହାରିବା ପରେ ଆହୁରି ଅନେକ ଉତ୍ସାହ ଓ ସାହସ ନେଇ ବିପ୍ଳବୀ ଆନ୍ଦୋଳନକୁ ମଜଭୁତ୍ ଓ ପ୍ରସାର କରିବା ଦିଗରେ ଅଗ୍ରସର ହୋଇଥିଲେ ।

ନିର୍ଯ୍ୟାତନା ଓ ଜେଲ୍ ଦଣ୍ଡ ମଧଦେଇ ତାଙ୍କର ସ୍ୱାସ୍ଥ୍ୟର ଅବନତି ଆରମ୍ଭ ହୋଇଥିଲା । ପୋଲିସ୍ ପୁଣି କିପରି ତାଙ୍କୁ ଗିରଫ୍ କରିବ , ସେ ଷଡ଼ଯନ୍ତ୍ର ଆରମ୍ଭ କରିଦେଇଥିଲା । ତେଣୁ ସେ ନିଜ ଘରକୁ ଯାଇ ପାରୁନଥିଲେ । କିନ୍ତୁ ,ଦାସୁ ତାଙ୍କ କାମର ପରିସର ବଢ଼ାଇ ଚାଲିଥିଲେ । ଜେଲ୍‌ରୁ ବାହାରିବା ପରେ ସାଂସ୍କୃତିକ ଦଳ ଗଠନ କରି , ଓଡ଼ିଶା ତଥା ସମଗ୍ର ଦେଶରେ ଥିବା ବିପ୍ଳବୀ ଅଂଚଳରେ ତାଙ୍କ ସାଂସ୍କୃତିକ କାର୍ଯ୍ୟକ୍ରମମାନ ପରିବେଷଣ କରୁଥିଲେ । ଆନ୍ଧ୍ରପ୍ରଦେଶର ଚାରଣ ବିପ୍ଳବୀ ଗାୟକ ତଥା କବି ଗଦ୍ଦରଙ୍କ କାର୍ଯ୍ୟକ୍ରମ ଯେପରି ଲୋକପ୍ରିୟ ଅଟେ , ଦାସୁରାମଙ୍କ କାର୍ଯ୍ୟକ୍ରମ ମଧ ସେହିପରି ଲୋକପ୍ରିୟ ହୋଇ ଚାଲିଥିଲା । ତେଣୁ ସମସ୍ତେ ତାଙ୍କୁ ଓଡ଼ିଶାର ଗଦ୍ଦର ବୋଲି କହୁଥିଲେ ।

ତାଙ୍କର ଗୀତ ରଚନାର ଶୈଳୀ ଖୁବ୍ ଅନନ୍ୟ । ସେଗୁଡ଼ିକ ଖୁବ୍ ସରଳ, ବୋଧଗମ୍ୟ , ଶ୍ରୁତିମଧୁର , ମନମୁଗ୍ଧକର ଏବଂ ହୃଦୟସ୍ପର୍ଶୀ ମଧ । ଆଉ ସେସବୁକୁ ସେ ଯେତେବେଳେ ନିଜେ ଗାଇ , ବାଜା ବଜେଇ ,ନାଚିକି ପରିବେଷଣ କରୁଥିଲେ ; କୁଇ ଭାଷା ବୁଝିପାରୁନଥିବା ଲୋକ ମଧ ମନ୍ତ୍ରମୁଗ୍ଧ ହୋଇ ତା ଭିତରେ ନିଜକୁ ହଜେଇ ଦେଉଥିଲା । ସାଧାରଣତଃ ଗୀତ ଗାଇବା , ନାଚିବା ଓ ବାଜା ବଜେଇବା ଭଳି ତିନିଟି କାମ ଏକାବେଳେ କରିବା ଅସମ୍ଭବ ହୋଇଥାଏ । କିନ୍ତୁ ଦାସୁରାମ ଏ କଳାରେ ଥିଲେ ନିପୁଣ । ଖୁବ୍ ଚମତ୍କାର ଭାବେ ଏହାକୁ କରିଦେଖାଉଥିଲେ । ଆଉ ସେଇଥିପାଇଁ ସେ ହଜାର ହଜାର ଆଦିବାସୀ ଜନଗଣଙ୍କ ହୃଦୟକୁ ଜିତି ପାରିଥିଲେ । ୨୦୦୪ ମସିହା

ସେପ୍ଟେମ୍ବର ୧୪ ତାରିଖରେ ଦମନ ପ୍ରତିରୋଧ ମଂଚ ତରଫରୁ ଆୟୋଜିତ କରାଯାଇଥିବା ଜନଗର୍ଜନ ସମାବେଶରେ ତାଙ୍କ ପରିବେଷିତ ଚିତାକର୍ଷକ ସାଂସ୍କୃତିକ କାର୍ଯ୍ୟକ୍ରମ ଯିଏ ଦେଖିଚି , ସେ କେବେ ହେଲେ ଭୁଲିପାରିବନି । ଯେତେବେଳେ ଯେଉଁଠି ଗରିବ ଆଦିବାସୀ ମାନେ ପୋଲିସ ଅତ୍ୟାଚାରର ଶିକାର ହେବା କଥା ଦାସୁ ଶୁଣୁଥିଲେ , ସେଠାକୁ ତାଙ୍କର ସାଂସ୍କୃତିକ ଦଳ ନେଇ ପହଂଚିଯାଉଥିଲେ । କଳିଙ୍ଗନଗରରେ ସରକାର ଦ୍ୱାରା ସଂଗଠିତ ଗଣହତ୍ୟା ଘଟଣାର ପ୍ରତିବାଦ କରିବାକୁ ସେ ମଧ ତାଙ୍କ ଦଳ ନେଇ ସେଠାରେ ପହଂଚିଯାଇଥିଲେ । ଜେଲ୍‌ରୁ ବାହାରିବା ପରେ ପୋଲିସ୍ ତାଙ୍କୁ ମାରିଦେବା ପାଇଁ ବହୁତ ଚେଷ୍ଟା କରିଛି । ତାଙ୍କ ଉପରେ ତିନି ଥର ମରଣାନ୍ତକ ଆକ୍ରମଣ କରିଛି । କିନ୍ତୁ ସେଥିରୁ ସେ କୌଶଳକ୍ରମେ ଖସିଯିବାରେ ସଫଳ ହୋଇଥିଲେ । ସେ ଯୁଆଡ଼େ ଯାଉଥିଲେ , ନିଜ ଭାଷା ଉପରେ ନୂତନ ତଥ୍ୟର ଅନୁସନ୍ଧାନ ଜାରୀ ରଖିଥିଲେ । ନିଜ ଭାଷା ପ୍ରତି ଏତେ ଭଲପାଇବା ଓ ନିଜ ସଂପ୍ରଦାୟକୁ ଦୁନିଆ ଆଗରେ ପରିଚିତ କରାଇବା ପାଇଁ ଅହରହ ଚେଷ୍ଟା କରୁଥିବା ଏଭଳି ଲୋକ ଗୋଟିଏ ଜାତି ପାଖରେ ଚିର ନମସ୍ୟ । ତାଙ୍କର କୁଇ ଭାଷା ଓ ଗରିବ କୁଇ ସଂପ୍ରଦାୟ ପ୍ରତି ଥିଲା ଅଗାଢ଼ ପ୍ରେମ ।

ଦାସୁ ଖୁବ୍ ମେଳାପୀ ଓ ସ୍ନେହି ଥିଲେ । ନିଜ ସହଯୋଗୀ ମାନଙ୍କ ମଧରେ କାହାର କିଛି ସମସ୍ୟା ହେଲ , ତାକୁ ସମାଧାନ କରିବାରେ ଲାଗିପଡୁଥିଲେ । କାମରୁ ଟିକେ ବିରତି ମିଳିଲେ ସମସ୍ତଙ୍କୁ ବହୁତ ମଜା ମଜା କଥା କହି , ଭିନ୍ନ ଭିନ୍ନ ରକମର ଅଙ୍ଗଭଙ୍ଗୀ ପ୍ରଦର୍ଶନ କରି ଖୁବ୍ ହସାଉଥିଲେ । ଜନଗଣଙ୍କ ସୁଖ ଦୁଃଖରେ ନିଜକୁ ହଜେଇ ଦେଇ ସେ ଆତ୍ମ ବିଭୋର ହୋଇଯାଉଥିଲେ । ସେସବୁ ହିଁ ତାଙ୍କୁ ଭିନ୍ନ ଭିନ୍ନ ରକମର ବିପ୍ଳବୀ କବିତା ରଚନା କରିବାର ଉତ୍ସାହ ଯୋଗାଉଥିଲା । 'କଲମ ଅସ୍ତ୍ର ଠାରୁ ମଧ ଅଧିକ ଶକ୍ତିଶାଳୀ' ତାହା ଦାସୁ ପ୍ରମାଣ କରିଦେଇଛନ୍ତି । ଜଣେ ବିପ୍ଳବୀ ପାଖରେ ଯାହା ସବୁ ଦେଖିବାକୁ ମିଳେ , ତାହାସବୁ ତାଙ୍କ ପାଖରେ ଥିଲା । ଜଣେ ବିପ୍ଳବୀ ଭାବେ ଦାସୁଙ୍କ ସରଳ ଜୀବନଯାପନ ଶୈଳୀ , ତ୍ୟାଗ , ଅବିଶ୍ରାନ୍ତ ପରିଶ୍ରମ , ନୂତନ ଗଣତାନ୍ତ୍ରିକ ବିପ୍ଳବକୁ ସଫଳ କରେଇବାକୁ ଅଦ୍ୟମ ଚେଷ୍ଟା ଚିର ସ୍ମରଣୀୟ । ଜଣେ ଲୋକପ୍ରିୟ ବିପ୍ଳବୀ ଜନକବି ଭାବେ ଜନଗଣଙ୍କ ହୃଦୟରେ ସେ ସର୍ବଦା ସ୍ଥାନ ପାଇବେ । ଦାସୁ ଆମ ପାଇଁ ଏକ ଅଭୁଲା ସ୍ମୃତି ।

ଗଜପତି ଜିଲ୍ଲାରେ ମହାମାରୀ ବ୍ୟାପିଥିବା ଖବର ଶୁଣିବା ପରେ ସେ ନିଜକୁ ରୋକି ପାରିନଥିଲେ । ତାଙ୍କ ସାଂସ୍କୃତିକ ଦଳ ସଦସ୍ୟଙ୍କୁ ଧରି କିଛି ଔଷଧ ସଙ୍ଗରେ ନେଇ ପହଂଚିଯାଇଥିଲେ ସେମାନଙ୍କ ପାଖରେ । ଅନେକ ଲୋକଙ୍କ ପ୍ରାଣ ରକ୍ଷା କରୁ କରୁ

ନିଜେ ମହାମାରୀର ଶିକାର ହୋଇଗଲେ । ରାଷ୍ଟ୍ରର ଦମନ ଯୋଗୁଁ ଭୂମିଗତ ଜୀବନ ବିତାଉଥିବା ଦାସୁଙ୍କୁ ଠିକ୍ ସମୟରେ ଚିକିତ୍ସା କରାଯାଇପାରିଲା ନାହିଁ । ଶେଷରେ ନିଜ ଗାଁରେ , ନିଜର ପ୍ରାୟ ମାଟିରେ ହିଁ ସେ ଶହୀଦ୍ ହୋଇଗଲେ । ଦିନେ ଓଡ଼ିଶା କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରାଣ ପ୍ରତିଷ୍ଠାତା ଭଗବତୀ ପାଣିଗ୍ରାହୀ ଠିକ୍ ଏହିପରି ମହାମାରୀ ପିଡିତଙ୍କ ସେବା କରୁ କରୁ ନିଜେ ମାହାମାରୀରେ ଆକ୍ରାନ୍ତ ହୋଇ ଶହୀଦ୍ ହୋଇଯାଇଥିଲେ । ବିପ୍ଳବୀ ମରିଯାଏ , ହେଲେ ବିପ୍ଳବ କେବେ ମରେନା । ଏହି ବିପ୍ଳବର ଧାରା ଜଣକ ହାତରୁ ଆଉ ଜଣଙ୍କ ହାତକୁ ହସ୍ତାନ୍ତର ହୋଇ , ଅନ୍ତିମ ବିଜୟ ଦିଗରେ ଅଗ୍ରସର ହୁଏ । ଜଣେ ଜନକବି କୌଣସି ଗାଁର କି ସହରର ନୁହେଁ , ସେ ସମଗ୍ର ଦେଶର ଜନକବି । ତାଙ୍କର ମାନବବାଦୀ କବିତା , ବିପ୍ଳବର ଗୁଞ୍ଜରଣ ସୃଷ୍ଟି କରିବ ସମଗ୍ର ପୃଥିବୀରେ । ଦାସୁଙ୍କ ମୃତ୍ୟୁରେ ବିପ୍ଳବୀ ଆନ୍ଦୋଳନ ହରାଇଲା ଜଣେ ଦକ୍ଷ ସାଥୀଙ୍କୁ । ଗରିବ ଜନଗଣ ହରାଇଲେ ତାଙ୍କର ଜଣେ ଦରଦୀ ବନ୍ଧୁକୁ । ଦାସୁଙ୍କ ଶହୀଦତ୍ୱ ଆମ ମାନଙ୍କ ପାଇଁ ଏକ ଅପୁରଣୀୟ କ୍ଷତି । ସେ ଅନ୍ୟ ବିପ୍ଳବୀ ମାନଙ୍କ ପାଇଁ ନିଦର୍ଶନ ଅଟନ୍ତି । "ହେ ବୀର ଯୋଦ୍ଧା , ହେ ମହାମାନବ , ଆମେ ତୁମକୁ ଜଣାଉଛୁ ଲାଲ୍‌ସଲାମ୍ । ତୁମେ ମରିନାହଁ , ତୁମେ ବଂଚି ରହିଛ ସମସ୍ତଙ୍କ ହୃଦୟରେ । ଶପଥ କରୁଛୁ , ତୁମ ମାଆ ମୁହଁରେ ତୁମେ ଯାହା ଚାହିଁଛ , ଆମେ ତାହା କରିବୁ । ତୁମ ଅଧୁରା ସ୍ୱପ୍ନକୁ ସାକାର କରିବୁ । ଶୋଷଣର କାରାଗାର ଭାଙ୍ଗିବୁ , ଦେଶ ମାତୃକାକୁ ମୁକ୍ତ କରିବୁ । ଚାରିଆଡ଼େ ବିଛାଡ଼ି ଦେବୁ ବିପ୍ଳବର ଲାଲ୍ କିରଣ , ଆଉ ସ୍ଥାପନ କରିବୁ ସର୍ବହରାର ଶାସନ । ସେଦିନ ତୁମେ ନିଶ୍ଚେ ଆସିବ ସାଥି , ଦେଖିଯିବ ତୁମ ତ୍ୟାଗ ଓ ପରିଶ୍ରମ ବ୍ୟର୍ଥ ହୋଇନାହିଁ । "



# ସାଥି ଦାସୁରାମ
# କିଛି କଥା ; କିଛି ବ୍ୟଥା

- ପବିତ୍ର

ଦାସୁ ଚାଲିଗଲା ପରେ ଓଡ଼ିଶାର ଜନବାଦୀ ସଂସ୍କୃତି ଜଗତରେ ଏକ ଅଭାବ ଅନୁଭବ ହେଉଛି । ନିକଟ ଭବିଷ୍ୟତରେ ସେ ଅଭାବ ପୁରଣ ହେଲାଭଳି ଲାଗୁନି । ସମସ୍ତଙ୍କର କିଛି ନା କିଛି ବିଶେଷ ଗୁଣ ଥାଏ । ହେଲେ ଏକାଧିକ ବିଷୟରେ ଦକ୍ଷତା ଥିବା ଲୋକ କମ୍ ମିଳନ୍ତି । ଗୋଟିଏ ଖେଳାଳୀ ଦଳ ପାଇଁ ( ଜଣେ ସବୁ ଖେଳାଳୀଙ୍କ କାମ ପୃଥକ ପୃଥକ ଭାବେ ଯେ ତୁଲାଇପାରିବାରେ ସମର୍ଥ ) ଅଲ୍‌ରାଉଣ୍ଡର୍‌ର ଭୂମିକା ଯେତିକି ଗୁରୁତ୍ୱପୂର୍ଣ୍ଣ ,ଓଡ଼ିଶାର ବିପ୍ଳବୀ ଆନ୍ଦୋଳନ ପାଇଁ ସାଥୀ ଦାସୁର ଭୂମିକା ଥିଲା ସେହିଭଳି ଗୁରୁତ୍ୱପୂର୍ଣ୍ଣ । ସେ ଥିଲେ ଏକାଧାରାରେ ଜଣେ କବି , ଗୀତିକାର , ସ୍ୱରକାର , କଂଠଶିଳ୍ପୀ , କୁଇଲିପିର ସ୍ରଷ୍ଟା , ଜମି ଆନ୍ଦୋଳନର ନେତା , ସିପିଆଇ(ମାଓବାଦୀ) ବାଶଦାରା ଡିଭିଜନାଲ କମିଟି ସଦସ୍ୟ । ଏହି ମର୍ମରେ କବି ମନମୋହନ ମିଶ୍ରଙ୍କ କବିତାର ଦୁଇଧାଡ଼ି ମନେପଡେ ।

ସମସ୍ତେ ହୁଅନ୍ତି ନାହିଁ ଲେନିନ୍ ବା ଷ୍ଟାଲିନ୍
ସେଥିପାଇଁ ଲୋଡ଼ା ନାହିଁ ବର୍ଷ-ମାସ-ଦିନ ।।

ଓଡ଼ିଶାର ଗଦ୍ଦର ଭାବେ ଜଣାଶୁଣା ଦାସୁ । ମହାମାରୀ ପିଡିତଙ୍କ ସେବା କରୁ କରୁ ନିଜେ ମହାମାରୀରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କଲେ । ବାସ୍ତବିକଏପରି ଉତ୍ସର୍ଗୀକୃତ ଜୀବନ ବହୁତ କମ୍ ଦେଖିବାକୁ ମିଳେ । ପୋଲିସର ଘେରାଉ ଦମନ , ପାନିଆ ତଲାସି ପାଇଁ ମେଡିକାଲ ଯିବା ଦୂରର କଥା , ଶେଷ ସମୟ ନିଜ ପରିବାର ସହିତ କଟାଇବା ତାଙ୍କ ପାଇଁ ଅସମ୍ଭବ ହୋଇପଡିଥିଲା । ଏକଦା ମାଓ କହିଥିଲେ , "ଯେଉଁ ଲୋକ ସାମ୍ରାଜ୍ୟବାଦ ବିରୁଦ୍ଧରେ ଜନଗଣଙ୍କ ସ୍ୱାର୍ଥରେ କାମ କରି ମୃତ୍ୟୁବରଣ କରେ , ତା'ର ମୃତ୍ୟୁ ପର୍ବତ ଭଳି ଓଜନିଆ । ଯେଉଁ ଲୋକ ଜନଗଣଙ୍କ ବିରୁଦ୍ଧରେ ସାମ୍ରାଜ୍ୟବାଦ ସ୍ୱାର୍ଥରେ କାମକରି ମୃତ୍ୟୁବରଣ କରେ , ତା'ର ମୃତ୍ୟୁ ଚଢ଼େଇର ପର ଭଳି ହାଲୁକା ।" ଦାସୁଙ୍କ ମୃତ୍ୟୁ ନିଶ୍ଚୟ ପର୍ବତ ଭଳି ଓଜନଦାର ମନେହେଉଛି ।

କ'ଣ ପାଇଁ ପୋଲିସ୍ ବାହିନୀ ଦାସୁକୁ ଧରିବା ପାଇଁ ଦିନରାତି ଅଙ୍କ କଷି ଚାଲିଥିଲା ? କ'ଣ ଥିଲା ତା'ର ଅପରାଧ ? ତା'ର ଅପରାଧ ଥିଲା ଯେ , ସେ ଆନ୍ଦୋଳନ ମାଧମରେ ଭୂମିହୀନଙ୍କୁ ଜମି ଦେଇଥିଲା । ଆଦିବାସୀ ମାନଙ୍କ ମଧରେ ଥିବା ଅନ୍ଧବିଶ୍ୱାସ ,

କୁସଂସ୍କାର ବିରୁଦ୍ଧରେ ବିଜ୍ଞାନ ଭିତିକ ଚେତନା ସୃଷ୍ଟି କରିଥିଲା । ଝିଙ୍କା ବିବାହ , ନାରୀ ନିର୍ଯ୍ୟାତନା ବିରୁଦ୍ଧରେ ଆନ୍ଦୋଳନ କରୁଥିଲା । ଶୋଷକ ମାନଙ୍କ ଅସ୍ତ୍ରଧାରୀ ଗୁଣ୍ଡା ପୋଲିସ୍ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଜନଗଣଙ୍କୁ ସଶସ୍ତ୍ର ହେବାକୁ ଉତ୍ସାହିତ କରୁଥିଲା ।

ଜଣେ କମ୍ୟୁନିଷ୍ଟ ହିସାବରେ ଦାସୁ ଥିଲା ସରଳଜୀବନ , କଠୋର ପରିଶ୍ରମ ଓ ଉଚ୍ଚଚିନ୍ତାର ଜ୍ୱଳନ୍ତ ଉଦାହରଣ । ମଝିରେ ମଝିରେ ପରିବାରର ଆବଶ୍ୟକତା ଦୃଷ୍ଟିରୁ ସେ କହେ , ସାଥୀ କିଛି ପୁରୁଣା ଲୁଗାପଟା ପଠାଇବ । ପୁରୁଣା କାହିଁକି. ନୂଆ ଆଣିଲେ ତ ହୁଅନ୍ତା ? ପ୍ରତିକ୍ରିୟାରେ ଦାସୁ କହେ , ସେମାନେ କୋଉ ସହର ବଜାରକୁ ଯାଉଛନ୍ତି ଯେ , ନୂଆ କପଡା ଦରକାର । ଜଙ୍ଗଲରେ ରହିବା , ବଗଡ କରିବା ଲୋକ ପୁରୁଣା ହେଲେ ଚଳିଯିବ । ସେ ବାବଦରେ ଯଦି କିଛି ପଇସା ବଂଚିଯାଏ , ଆମେ ଅନ୍ୟ କାମରେ ଲଗାଇ ପାରିବା । ଲୋକଙ୍କ ପାଇଁ ଲୋକଙ୍କ ଯୁଦ୍ଧ ପାଇଁ ଖର୍ଚ୍ଚ କରିପାରିବା ।

ବାସ୍ତବ ଅର୍ଥରେ ସେ ହିଁ କମ୍ୟୁନିଷ୍ଟ , ଯିଏ କଥା ଆଉ କାମ ମଧରେ ସାମଞ୍ଜସ୍ୟ ରଖେ - ତତ୍ୱକୁ ପ୍ରୟୋଗରେ ନିଏ । ଶ୍ରେଣୀ ହୀନ ସମାଜ ଗଠନ ପାଇଁ ଶ୍ରେଣୀ ସଂଗ୍ରାମ ଅପରିହାର୍ଯ୍ୟ । ସେଥିପାଇଁ ଜନଗଣଙ୍କୁ ସଂଗଠିତ କରିବାକୁ ପଡିବ , ସଶସ୍ତ୍ର କରିବାକୁ ପଡିବ । ଏ କଥାକୁ ଦାସୁ ବୁଝିଥିଲେ ଓ କାମରେ ଲଗାଉଥିଲେ । ତାଙ୍କର ଦୈନଦିନ କାର୍ଯ୍ୟ ଥିଲା , ମାର୍କ୍ସବାଦ-ଲେନୀନବାଦ-ମାଓବାଦ ତତ୍ୱକୁ ଅତି ସରଳ ଭାବରେ , ଜନଗଣଙ୍କ ଦୈନଦିନ ସମସ୍ୟା ସହିତ ମିଶାଇ , ନାଚଗୀତ ମାଧମରେ ଜନତାଙ୍କ ନିକଟରେ ପହଁଚାଇବା । ସେମାନଙ୍କୁ ଐକ୍ୟବଦ୍ଧ କରିବାରେ ସେ ଥିଲେ କୁଶଳୀ କାରିଗର ।

ଦାସୁ ଯେତିକି ଗମ୍ଭୀର , ସେତିକି ମଜାଳିଆ କିଷମର ଲୋକ ମଧ । ମଜାମଜା କଥା କହି ହସେଇବାରେ ଧୁରନ୍ଧର । ତା' ଜୀବନରେ ମଧ ଅନେକ ମଜାଳିଆ ଘଟଣା ଘଟିଛି । ପିଲାଦିନେ ଥରେ ଦାସୁ ରାସ୍ତାରେ ଗୋଟିଏ କାର୍‌କୁ ଦେଖି ଭୟରେ ଦୌଡି ପଳାଇ ରାସ୍ତାର ପୋଲ ତଳେ ଲୁଚିଗଲା । ତା'ର ଧାରଣାଥିଲା ଇଏ ଗୋଟିଏ ମଣିଷ ଖିଆ ଜନ୍ତୁ । ଆଉ ଦିନେ ସେ ଜଣେ ସାଥିଙ୍କୁ ଆଣିବାକୁ ସହରକୁ ଯାଇଥିଲା । ଆଣିକରି ଫେରିବା ବେଳେ , ଦାସୁ ବସ୍‌ର ଆଗ ସିଟ୍ ରେ ବସି ଆସୁଥାଏ । ସାଙ୍ଗରେ ଥିବା ସାଥି ଏଇଟା ଲକ୍ଷ୍ୟ କରିଥିଲେ । ପଁହଚିବା ପରେ ମଜାରେ କହିଲେ , ଆଜି ଆଶ୍ଚର୍ଯ୍ୟ ଘଟଣା ଘଟିଲା । କାର୍‌କୁ ଦେଖି ଡରିଥିବା ପାଙ୍ଗି , ଆଜି କାର୍‌ଠାରୁ ଢେର୍ ଗୁଣ ବଡ ଏକ ଜୀବର ପାଟି ଉପରେ ବସି ଆସିଲା । ଏକଥା ଶୁଣିବା ପରେ ପାଙ୍ଗି ସହିତ ଉପସ୍ଥିତ ଥିବା ସମସ୍ତ ସାଥୀ ମଜାରେ ହସିଥିଲେ । (ଯିଏ ପାଙ୍ଗି ସିଏ ହିଁ ଦାସୁ) । ଆଉଦିନେ , ଜେଲ୍‌ରୁ ଫେରିବା ପରେ ଦାସୁଙ୍କ ଦେହରେ ମାଡ଼ର ଦାଗ ଦେଖି , ଅନ୍ୟ ଜଣେ ଜେଲ୍ ଫେରନ୍ତା ସାଥିର

ବାପା ଦାସୁକୁ କହିଲେ "ତୋତେ ବହୁତ ମାରିଲେ ସେମାନେ । ମୋ ପୁଅକୁ ଗୋଟେ ଦିନ ପିଟିଥିଲେ । ହେଲେ ତୋତେ ତ ୧୬ ଦିନ ପିଟିଲେ । ତୋତେ ମାରି ଦେଇଥାନ୍ତେ କାଇଁକି ?" । ଏତେ ମାଡ଼ ଖାଇ ଜେଲ୍‌ରୁ ଆସିଥିବା ଦାସୁ ହସି ହସି କହିଲେ "ତୁମ ପୁଅ ଗୋଟେ ବ୍ଲକରେ କାମ କରୁଛି । ସେଥିପାଇଁ ଦିନେ ମାଡ଼ ଖାଇଲା । ମୁଁ ରାୟଗଡ଼ା-ଗଜପତି ଦୁଇ ଜିଲ୍ଲା ପାଇଁ କାମ କରୁଛି ତ , ତେଣୁ ୧୬ ଦିନ ପିଟିଲେ । ସତରେ ମାରି ପକେଇଥାନ୍ତେ । ହେଲେ ମୁଁ ବେଶି ମୋଟା ସୋଟା ନୁହେଁ । ଅଳପ ମାଉଁସ ବାହାରିବ । ସେଥିପାଇଁ ଛାଡ଼ିଦେଲେ ।" ବିପ୍ଳବୀ ଜୀବନରେ ଜେଲ୍ ମାଡ଼ ଅନିର୍ବାର୍ଯ୍ୟ ଏହା ସେ ବୁଝିଥିଲେ ଓ ଏ ହସ ମଜା ପରେ ସେ ବିଷୟ ବୁଝାଇଥିଲେ ମଧ । ୧୬ ମାସର ବନ୍ଦୀ ଜୀବନ ଦାସୁ ଟିକେ ବି ନଷ୍ଟ ହେବାକୁ ଦେଇ ନାହାନ୍ତି । ୧୬ ମାସ ମଧରେ ସେ ସୃଷ୍ଟି କରିଥିଲେ କୁଇଲିପି , ଲେଖିଥିଲେ ଶତାଧିକ ଗୀତ ,ଏବଂ ବୟସ୍କ ବନ୍ଦୀ ମାନଙ୍କ ଠାରୁ ବିଭିନ୍ନ କୁଇ ଲୋକ କାହାଣୀ ଶୁଣି ତାକୁ ଗପ ଆକାରରେ ଲେଖିଥିଲେ । ଦୁଃଖର ବିଷୟ ତାଙ୍କ ବିୟୋଗ ପରେ ଘରଲୋକ ଅଜ୍ଞତା ହେତୁ ଆଦିବାସୀ ପରଂପରା ଅନୁଯାୟୀ ତାଙ୍କ ସହିତ ତାଙ୍କର କିଛି ବିରଳ ସୃଷ୍ଟିକୁ ମଧ ମାଟିରେ ପୋତି ଦେଲେ ।

ଏହି ଦୁଃଖଦ ଘଟଣା ପରେ ତାଙ୍କ ପରିବାରକୁ କିଛି ସାଥୀ କିଛି ଚାଉଳ ସହଯୋଗ କରିଥିଲେ । ପୋଲିସ ଏକଥା ଜାଣି ତାଙ୍କ ମା'ଙ୍କୁ ଜୋରକରି ଚାଉଳ ମୁଣ୍ଡେଇ ଫଟୋ ଉଠାଇ କହିଲେ 'ଏ ଚାଉଳ କିଏ ଦେଇଛି କହ' ମା'କିନ୍ତୁ କିଛି କହିନଥିଲେ । ପୋଲିସ୍ ହୁଏତ ନାଁ ଶୁଣିଥିଲେ , ନକ୍ସାଲ୍ କେଶ୍‌ରେ ତାଙ୍କ ମା'କୁ ଛନ୍ଦିଥା'ନ୍ତା ।

ଦାସୁର ଦେହାନ୍ତ ପରେ କିଛି ସାଥୀ ଯାଇ ତାଙ୍କ ମା'ଙ୍କୁ କହିଲେ , ମା' ଆମେ କ'ଣ କରି ପାରିବୁ ? ଟିକେ ଗମ୍ଭୀର ହୋଇ ମା' ଯେଉଁ ଉତର ଦେଲେ , ସେଥିରେ ସମସ୍ତେ ସ୍ତମ୍ଭିଭୂତ ହୋଇଗଲେ । "ତମେ ମୋ ପାଇଁ ତା' ପରିବାର ପାଇଁ କିଛି କରିବା ଦରକାର ନାହିଁ । ସେ ଥିଲା ବେଳେ ବି ଆମ ପାଇଁ କ'ଣ କରୁଥିଲା ? ଆମେ ଯେମିତି କାମ କରି , ବଗଡ଼ କରି ବଂଚୁଥିଲୁ , ଏବେ ସେମିତି ବଂଚିବୁ । ପାରିବ ଯଦି , ସେ ଛାଡ଼ି ଯାଇଥିବା ଅଧା କାମକୁ ପୁରାକର ।" ଆମେ ପୂର୍ବଜନ୍ମ-ପରଜନ୍ମରେ ବିଶ୍ୱାସ କରୁନା । ତଥାପି ମୋତେ ଯଦି କେହି ପଚାରେ ତମେ ଆର ଜନ୍ମରେ କ'ଣ ହୋଇ ଜନ୍ମ ହେବାକୁ ଚାହଁ ? ମୁଁ କହିବି - ମୁଁ ଏ ଭଳି ମାଆର ସନ୍ତାନ ହୋଇ ଜନ୍ମ ନେବାକୁ ଚାହେଁ । ସତରେ ଏମିତି ମାଆଙ୍କ ଉଦାହରଣ ଇତିହାସରେ ବହୁତ କମ୍ ଦେଖିବାକୁ ମିଳେ । ମୁକ୍ତିର ଲଢାଇରେ , ଶ୍ରେଣୀ ସଂଗ୍ରାମରେ ନିଜର ସନ୍ତାନକୁ ଉତ୍ସର୍ଗ କରିଥିବା ମାଆ ବା କେତେ ଜଣ ଅଛନ୍ତି । ଦାସୁଙ୍କ ମାଆ ର ଏଭଳି ଚେତନା ପଛରେ ଦାସୁଙ୍କ ଅବଦାନ ସ୍ୱୀକାର୍ଯ୍ୟ ।

ବ୍ୟକ୍ତି ଅମର ନୁହେଁ । ଜଣେ ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ । ବ୍ୟକ୍ତି ମରିଯିବା ପରେ , ସମାଜରେ ବଂଚିରହେ ଜନଗଣଙ୍କ ପ୍ରତି ତା'ର କର୍ତବ୍ୟ , ମଣିଷ ପ୍ରତି ତା'ର ଦାୟିତ୍ୱବୋଧ ମଧ ଦେଇ । ଯିଏ ଜନତାଙ୍କ ପାଇଁ ନିଜର ସର୍ବସ୍ୱ , ଏମିତିକି ନିଜର ଜୀବନକୁ ଉତ୍ସର୍ଗ କରିବାକୁ ସଂକଳ୍ପବଧ , ସେ ହିଁ ସୃଷ୍ଟି କରେ ଇତିହାସ ।

ସାଥୀ ଦାସୁ ଥିଲେ ଜଣେ ଆପୋଷହୀନ ଯୋଦ୍ଧା । ପରିବାରର ଭୟଙ୍କର ଦାରିଦ୍ର୍ୟତା , ରାଷ୍ଟ୍ରର ପୈଶାଚିକ ଦମନ , ୧୬ ମାସର ବନ୍ଦୀ ଜୀବନ ମଧ ତାଙ୍କ ମଧରେ ସୃଷ୍ଟି କରି ପାରିନଥିଲା ହତାଶା , ନିରାଶା । କେବେବି ସେ ପ୍ରତିକୂଳ ପରିସ୍ଥିତି ପାଖରେ ମୁଣ୍ଡ ନୁଆଁଇ ନଥିଲେ । ଦୀର୍ଘସ୍ଥାୟୀ ଜନଯୁଦ୍ଧ ରାସ୍ତାର ଜଣେ ଅନୁଶାସନ ବଦ୍ଧ ପଦାତୀକ ହିସାବରେ ସେ ସର୍ବଦା ଆଗେଇ ଚାଲିଥିଲେ ।

ଶେଷରେ -

ଲେନିନ୍ କହିଥିଲେ , ଜୀବନରେ ଥରେ ଅଧେ ଭଲକାମ କରିବା ସମସ୍ତଙ୍କ ପକ୍ଷେ ସହଜ । କିନ୍ତୁ ଜୀବନ ସାରା ଭଲ କାମ କରିବା ମୋଟେ ସହଜ ନୁହେଁ । ଯାହା ଦାସୁ କରିଦେଖାଇଲେ ।

- ଲାଲ୍‌ସଲାମ୍ କମ୍ରେଡ୍ ଦାସୁ ।



**ବିପ୍ଳବୀ କବି ୱାରଓ୍ୱାର ରାଓ , ଦମନ ପ୍ରତିରୋଧ ମଂଚ ଆବାହକ ଦଣ୍ଡପାଣି ମହାନ୍ତି ଓ ଅନ୍ୟ ମାନଙ୍କ ଗହଣରେ ଦାସୁରାମ**

# ସେ ବଂଚି ରହିବେ ଜନତାଙ୍କ ହୃଦୟରେ

- ପ୍ରାଚୀ

କୁଇ ଲିପିର ସ୍ରଷ୍ଟା , କବି , ଗାୟକ ତଥା ସାଂସ୍କୃତିକ କର୍ମୀ ହିସାବରେ ପରିଚିତ ଓଡ଼ିଶାର ଗଦ୍ଦର , ଗତ ସେପ୍ଟେମ୍ବର ମାସ ୧୦ ତାରିଖରେ ଶହୀଦ ହୋଇଯାଇଛନ୍ତି । ସେ ମହାମାରୀ ଆକ୍ରାନ୍ତଙ୍କ ସେବା କରୁ କରୁ ନିଜେ ତା'ର ଶିକାର ହୋଇ ସବୁଦିନ ପାଇଁ ବିପ୍ଳବୀ ସଂଗ୍ରାମରୁ ଅବସର ନେଇଯାଇଛନ୍ତି । ଅବଶ୍ୟ ଏଥିପାଇଁ ପ୍ରତିକୂଳ ପରିସ୍ଥିତି ହିଁ ଦାୟୀ । ପୋଲିସର ଦମନରାଜ ହିଁ ତାଙ୍କ ମୃତ୍ୟୁର କାରଣ । ଯାହାର ଫଳସ୍ୱରୁପ ଓଡ଼ିଶାବାସୀଙ୍କୁ ଜଣେ ଯୁବ ପ୍ରତିଭାଙ୍କୁ ହରାଇବାକୁ ପଡିଲା । ଯାହାର ଖାଲି ଜାଗା ପୂରଣ ହେବା ବର୍ତମାନ କଷ୍ଟ ।

ପାହାଡ଼ , ପର୍ବତଘେରା ଗଜପତି ଜିଲ୍ଲା ଥିଲା ଏହି ମହାନ୍ ବ୍ୟକ୍ତି ଦାସୁରାମଙ୍କ ଜନ୍ମ ସ୍ଥାନ । ଯେଉଁଠି ଛୋଟ ବେଳୁ ଅନାହାର , ଅର୍ଦ୍ଧାହାର ଓ ଅଶିକ୍ଷା ଥିଲା ଦାସୁରାମଙ୍କ ସହଚର । ପୋଡୁଚାଷ ଦ୍ୱାରା ଯାହା ସାମାନ୍ୟ କିଛି ଚାଷବାସ , ସେଥିରେ ବର୍ଷକ ଚଳିବା କଷ୍ଟ । ତଥାପି ଦାସୁ କଷ୍ଟେ ମଷ୍ଟେ ସପ୍ତମ ପାଠ ଶେଷ କଲା , ଆଉ ପାରିଲାନି । ବାଧହୋଇ ଘରେ ରହିଲା । ଘରେ ରହିଲେ ବି ଦାସୁ ମନରେ ସେଠାକାର ଦୁଃଖ , କଷ୍ଟ , ଲୋକମାନଙ୍କର ବଂଚିବା ଶୈଳୀ ତଥା ସାହୁକାର , ଜମିଦାର ମାନଙ୍କ ଶୋଷଣ ବାରମ୍ବାର ମଥା ପିଟୁଥିଲା । ତେଣୁ ଦାସୁ ଆଉ ସମ୍ଭାଳି ନପାରି ଏକ ସୁସ୍ଥ ସମାଜ ଗଠନ ଉଦ୍ଦେଶ୍ୟରେ ଆଦରି ନେଲା ଝଂଜଣି ଏବଂ ଗୀତକୁ । ପରେ ପରେ ଏକ ସାଂସ୍କୃତିକ ଦଳ ଗଠନ କରି ନିଜର ଅଧିକାର ପାଇଁ ଲୋକମାନଙ୍କୁ ସଂଗଠିତ ହେବାକୁ ପ୍ରବର୍ତାଇଲା । ଯାହାଦ୍ୱାରା ଧିରେ ଧିରେ ପ୍ରଶାସନର ଦୃଷ୍ଟି ଦାସୁ ଉପରେ ପଡ଼ିଲା । ଜମିଦାର , ସାହୁକାର ମାନେ ଦାସୁକୁ ନିଜର ବଡ ଶତ୍ରୁ ବୋଲି ମନେକଲେ ଏବଂ ତା'ର ଗତିବିଧି ଉପରେ ପୋଲିସକୁ ଖବର ଦେଲେ । ଦାସୁ କ୍ରମଶଃ ଲୋକମାନଙ୍କର ପ୍ରିୟଭାଜନ ହେବାରେ ଲାଗିଲା । ପ୍ରତ୍ୟେକ ଉତ୍ସବାନୁଷ୍ଠାନରେ ଦାସୁକୁ ଖୋଜାପଡିଲା । ସୁବିଧା ଅସୁବିଧାରେ ଦାସୁର ପରାମର୍ଶ ପାଇଁ ଲୋକ ଧାଇଁଗଲେ । ଦାସୁ ମଧ ଅତି ସରଳ ଭାବେ ଲୋକମାନଙ୍କର ସମସ୍ୟାକୁ ସମାଧାନ କରିବାକୁ ଚେଷ୍ଟା କରେ । ମୁଖ୍ୟତଃ ଦାସୁ ଥିଲା ଚଳମାନ ସମାଜ ବ୍ୟବସ୍ଥାର ଘୋର ବିରୋଧୀ । କାରଣ ଏ ବ୍ୟବସ୍ଥା କେବଳ ୧୦ ଭାଗ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଫଳରେ ଦାସୁ ବିପ୍ଳବୀ ସଂସ୍କୃତିର ସାହାରା ନେଇ ସାମନ୍ତବାଦ , ସାମ୍ରାଜ୍ୟବାଦକୁ ବିତାଡିତ କରି ଚାଷୀ ମୂଲିଆର ସମାଜ ବ୍ୟବସ୍ଥା ଗଠନ ପାଇଁ ହତିଆର ଉଠାଇବାକୁ ଜନଗଣଙ୍କୁ ଆହ୍ୱାନ କରୁଥିଲେ । ସେ ମଧ 'ବିପ୍ଳବୀ ଚାଷୀ ମୂଲିଆ ସମିତି'ର ସଦସ୍ୟ ଥିଲେ । ତାଙ୍କର

ବର୍ଦ୍ଧିଷ୍ଣୁ ଲୋକପ୍ରିୟତା ଏବଂ ସାଂଗଠନିକ ଦକ୍ଷତାକୁ ଦେଖି ଶୋଷକ ଶାସକ ଶ୍ରେଣୀ ପ୍ରମାଦ ଗଣିବା ଆରମ୍ଭ କଲା । ବିଭିନ୍ନ ମିଛ କେଶ୍‌ରେ ଫସାଇବାକୁ ଚାଲିଲା ହୀନ ଚକ୍ରାନ୍ତ । ଏହି ଚକ୍ରାନ୍ତ ଯୋଗୁଁ ମଧ ତାଙ୍କୁ ବିନା ଦୋଷରେ ୧୬ ମାସ ବନ୍ଦୀ ଜୀବନ ବିତାଇବାକୁ ହୋଇଛି । ମାତ୍ର ଏହି ଯୋଦ୍ଧା ଭାଙ୍ଗି ନପଡି ତାଙ୍କର ମନୋବଳକୁ ବହୁଗୁଣିତ କଲେ । ଜେଲ୍‌ରୁ ବାହାରି କଳା କୋଠରୀର କରାଳ ଦୃଶ୍ୟକୁ ଉପସ୍ଥାପନ କରିଥିଲେ ଭୁବନେଶ୍ୱରର ସାମ୍ବାଦିକ ସମ୍ମିଳନୀରେ । ଜେଲ୍‌ଖାନା ଯେ ନିର୍ଯ୍ୟାତନା ଗୃହ ଏବଂ ମଣିଷକୁ ପଶୁବତ୍ ବଂଚିବାକୁ ହୁଏ , ଏକଥା ଅତି ନିର୍ଭୀକ ଭାବେ ଏହି କବି ଜଣକ ଦୁଃଖର ସହ ପ୍ରକାଶ କରିଥିଲେ । ତାଙ୍କ ପ୍ରତି ହୋଇଥିବା ବର୍ବରତାକୁ ଲୋକଲୋଚନକୁ ଆଣିଥିଲେ ।

ଜେଲ୍‌ରୁ ବାହାରି ସେ ଦମନ , ପୀଡନ ବିରୋଧୀ ପ୍ରତ୍ୟେକ ଆନ୍ଦୋଳନରେ ସକ୍ରିୟ ଭାଗ ନିଅନ୍ତି ଏବଂ ତାଙ୍କର ପରିଚିତ ବଢିବାରେ ଲାଗେ । ଜନଗର୍ଜନ ସମାବେଶ ହେଉ ବା କଳିଙ୍ଗନଗର ଗଣହତ୍ୟା ଘଟଣା ପ୍ରତିବାଦରେ ହେଉ , ଦାସୁ ଥିଲେ ଜଣେ ଆଗଧାଡ଼ିର ନେତା । ଜନବାଦୀ ଆନ୍ଦୋଳନର ଏହି ମହାନ୍ ନେତା ଥିଲେ ଜଣେ ମାଓବାଦୀ । ମାଓବାଦ ହିଁ ମୁକ୍ତିର ଏକମାତ୍ର ହତିଆର , ଏହାହିଁ ଥିଲା ତାଙ୍କ ଗୀତର ସାରାଂଶ । ଶ୍ରମିକ-କୃଷକ ମୈତ୍ରୀ ରେ ଜନଯୁଦ୍ଧ ଦ୍ୱାରା ହିଁ ବ୍ୟବସ୍ଥା ପରିବର୍ତ୍ତନ ସମ୍ଭବ ବୋଲି ସେ ବୁଝିଥିଲେ । ସେଥିପାଇଁ ବନ୍ଧୁକ ଉଠାଇବାକୁ ଓ ଜନତାଙ୍କୁ ସଂଗଠିତ ହେବାକୁ ସାଂସ୍କୃତିକ କାର୍ଯ୍ୟକ୍ରମ ଦ୍ୱାରା ଲୋକଙ୍କୁ ବୁଝାଉଥିଲେ । ପ୍ରଚଳିତ ସଂସ୍କୃତି ଯେ ଅପସଂସ୍କୃତି ମଣିଷକୁ ପଙ୍ଗୁ କରିବାର ସଂସ୍କୃତି , ସେଥି ନିମନ୍ତେ ତାକୁ ବର୍ଜନ କରିବାକୁ କହୁଥିଲେ । ବିପ୍ଳବୀ ସଂସ୍କୃତିକୁ ଗ୍ରହଣ କରି , ଜମି , ଜଳ , ଜଙ୍ଗଲ ଉପରେ ନିଜର ଅଧିକାର ପାଇଁ ପ୍ରତିରୋଧ ଆନ୍ଦୋଳନ ଗଢ଼ିବାକୁ ଲୋକଙ୍କୁ ଏକାଠି କରୁଥିଲେ । ଜମିଦାର , ସାହୁକାର ଶୋଷଣକୁ ପ୍ରତିହତ କରିବା ପାଇଁ ତଥା ଜମି ଦଖଲ , ଫସଲ ଦଖଲ ପାଇଁ ସେ ଲୋକମାନଙ୍କୁ ସଂଗଠିତ କରୁଥିଲେ । ବିସ୍ଥାପନ ବିରୋଧୀ ଆନ୍ଦୋଳନର ସେ ଥିଲେ ଅଗ୍ରଯୋଦ୍ଧା । ତାଙ୍କର ଏହି କାର୍ଯ୍ୟକ୍ରମ ପୋଲିସ୍ ପାଇଁ ଥିଲା ଖୋଲାଖୋଲି ଚ୍ୟାଲେଞ୍ଜ୍ । ଫଳରେ ଆତଙ୍କିତ ପୋଲିସ୍ ପୁଣି ମିଥ୍ୟା କେସ୍ ଦେବା ସହ ଦାସୁକୁ ଧରିବା ପାଇଁ ଲକ୍ଷେ ଟଙ୍କା ପୁରସ୍କାର ଘୋଷଣା କଲେ । ଲୋକମାନେ ଏହା ଜାଣିଲା ପରେ , ଦାସୁକୁ ନିଜର ସଂପତି ହିସାବରେ ସୁରକ୍ଷା ଯୋଗାଇଲେ । ଯାହା ଫଳରେ ପୋଲିସ୍ ଦାସୁକୁ ଚେଷ୍ଟା କରି ମଧ ଧରିବାରେ ବିଫଳ ହେଉଥିଲା ।

ବିପ୍ଳବୀ ଆନ୍ଦୋଳନର ଏହି ସକ୍ରୀୟ କର୍ମୀ ଦାସୁରାମଙ୍କ ଅକାଳ ବିୟୋଗ କେବଳ ଗଜପତି , ରାୟଗଡ଼ା କି ଓଡ଼ିଶା ନୁହେଁ , ଭାରତୀୟ ବିପ୍ଳବ ପାଇଁ ମଧ ଅପୂରଣୀୟ କ୍ଷତି ।

ଜନବାଦୀ ଆନ୍ଦୋଳନ ପାଇଁ ତାଙ୍କର ବାସ୍ତବ ଧର୍ମୀ , ସୃଜନଶୀଳ ସୃଷ୍ଟି ଚିରସ୍ମରଣୀୟ ହୋଇରହିବ । କମ୍ୟୁନିଷ୍ଟ ଆନ୍ଦୋଳନର ଏହି ସକ୍ରିୟ ସାଂସ୍କୃତିକ କର୍ମୀଙ୍କ ବିପ୍ଲବୀ ସଂସ୍କୃତି ପ୍ରତି ଥିବା ଅବଦାନ ଗୁଡ଼ିକ ମାନସ ପଟରେ ଅମର ହୋଇ ରହିବା ସ୍ୱାଭାବିକ । ତାଙ୍କର ହସହସ ମୁହଁ , ମୁଣ୍ଡରେ ବନ୍ଧା ଲାଲ୍ କପଡ଼ା , ହାତରେ ଦାଆ ଓ ହାତୁଡି ଥିବା ଲାଲ୍ ପତାକା , ସାଗୁଆ ଲୁଙ୍ଗି ଓ ଲାଲ୍ ବ୍ୟାନିଅନ୍ ସହ ଖଁଜଣିକୁ ଯେତେ ଭୁଲିବାକୁ ଚେଷ୍ଟା କଲେ ବି ଭୁଲି ହୁଏନା । ଭୂମିଗତ କାରଣରୁ ସେ ଆଶୁ ଚିକିତ୍ସା ପାଇପାରିଲେନି । ଭାରତୀୟ ସ୍ୱାସ୍ଥ୍ୟସେବାର ଅପାରଗତା ଯୋଗୁଁ ସେ ଶହୀଦ୍ ହୋଇଗଲେ । ମଣିଷକୁ ଅତି ଭଲ ପାଉଥିବା ଏହି କବି କ'ଣ କେବେ ମରିପାରେ ? ନା , ସେ ପୁଣି ଆସିବେ ଏକରୁ ଅନେକ ହୋଇ ; ଗଛ , ଲତା , ପାହାଡ଼ , ପର୍ବତରେ - ଓଡ଼ିଶାର ଘରେ ଘରେ । ପ୍ରତିକୂଳ ପରିସ୍ଥିତିକୁ ସାମ୍ନା କରି କିଭଳି ବିପ୍ଳବୀ ସଂଗ୍ରାମକୁ ଆଗେଇ ନେବାକୁ ହୁଏ , ତାହା ଦାସୁରାମ ତାଙ୍କ ଜୀବନ କାଳରେ ଦେଖାଇ ଦେଇଯାଇଛନ୍ତି । ବର୍ତମାନ ଆମକୁ ସାଂସ୍କୃତିକ କ୍ଷେତ୍ରରେ ତାଙ୍କର ଅନୁପସ୍ଥିତିକୁ ପୂରଣ କରିବା ପାଇଁ ଲାଗିପଡ଼ିବାକୁ ହେବ । ଦାସୁରାମଙ୍କ ମୃତ୍ୟୁପାଇଁ ଥିବା ଦୁଃଖକୁ ଆମକୁ ପ୍ରଶାସନ ପ୍ରତି ଘୃଣାରେ ପରିବର୍ତନ କରିବାକୁ ହେବ । ଲୁହକୁ ଲାଲ୍ ବହ୍ନିରେ ପ୍ରଜ୍ୱଳିତ କରି ଓଡ଼ିଶା ସହ ଭାରତର ପ୍ରତ୍ୟେକ ଜାଗାରେ ତୋଳି ଧରିବାକୁ ହେବ । ତାଙ୍କର ବଳିଦାନର ମହତ୍ୱ ସ୍ୱରୂପ ଯେତେ ଶୀଘ୍ର ଚାଷୀ ମୂଲିଆ ରାଜ ପ୍ରତିଷ୍ଠା କରିପାରିବା , ସେ ହେବ ତାଙ୍କ ପାଇଁ ପ୍ରକୃତ ସମ୍ମାନ । କମ୍ରେଡ୍ ଦାସୁ ଅମର ରହେ !



**ଦାସୁରାମ ଓ ଯୋଶେଫ୍‌ଙ୍କର ସମାଧି**

# ଦାସୁରାମ ଅମର ରହେ !

- ପ୍ରଣବ

ଏକ ଅବିସ୍ମରଣୀୟ ଅଧ୍ୟାୟର ଅନ୍ତ ଘଟିଲା । କୁଇ ଜନକବି ସାଥି ଦାସୁରାମ ମାଲେକା , ଓଡ଼ିଶା - ବିଶେଷ କରି ପଶ୍ଚିମ ଓ ଦକ୍ଷୀଣ ଓଡ଼ିଶାର ପାହାଡ଼ ଜଙ୍ଗଲ ଘେରା ଅଂଚଳରେ ଚିର ସାଥି 'ହଇଜା ବା ଝାଡ଼ାବାନ୍ତି' ରେ ମୃତ୍ୟୁବରଣ କରି ଶହିଦ ହୋଇଗଲେ । କହିବା ନିଷ୍ପ୍ରୟୋଜନ ଯେ , ଗଜପତି ଜିଲ୍ଲାର ଗୁଡରିପଙ୍କା ଗ୍ରାମରେ ଅତ୍ୟନ୍ତ ଗରିବ ଘରେ ଓ ଗରିବୀ ପରିବେଶରେ ଜନ୍ମ ହୋଇ କମ୍ରେଡ୍ ଦାସୁରାମ ମାତ୍ର ୭ମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ତଥାକଥିତ ଶିକ୍ଷା ବ୍ୟବସ୍ଥାରେ ମାତ୍ର ୭ମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ ମଧ , ମାନବ ଜୀବନର ପାଠକୁ କିନ୍ତୁ ବହୁତ ବାଟ ପର୍ଯ୍ୟନ୍ତ ପଢ଼ି ପାରିଥିଲେ । ସେଇଥି ପାଇଁ ତ ନିଜ ସ୍ୱାସ୍ଥ୍ୟ ବିଷୟରେ ଚିନ୍ତା ନକରି ଜନଗଣଙ୍କ ସେବାରେ ଉତ୍ସର୍ଗୀକୃତ ହୋଇ ଶହିଦ ହୋଇଗଲେ ।

ଜନ୍ମ ହେବା ପରଠାରୁ ଶହୀଦ ହେବା ପର୍ଯ୍ୟନ୍ତ , ତାଙ୍କ ଜୀବନ ଥିଲା ଏକ ଘଟଣା ବହୁଳ ଅଧ୍ୟାୟ । କେବେ କୁଇ ଜନକବିର ସ୍ୱୀକୃତି ପାଇ ଆତଙ୍କିତ ରାଷ୍ଟ୍ର ଦ୍ୱାରା ୧୬ ମାସ ଜେଲର ବନ୍ଦ କୋଠରୀରେ ତ , କେତେବେଳେ କୁଇଲିପି ଉଦ୍ଭାବନ କରି ଲୋକମାନଙ୍କ ହୃଦୟରେ ସେ ବନ୍ଦି ହୋଇରହିଲେ । ସମାଜ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା ପାଇଁ , ଏକ ଜନ ମଙ୍ଗଳକାରୀ ସମାଜବାଦୀ ବ୍ୟବସ୍ଥା ସ୍ଥାପନା କରିବାର ଲକ୍ଷ୍ୟରେ , ମାଓବାଦକୁ ହତିଆର କରି ଗୀତ ମାଧ୍ୟମରେ ସେ ପ୍ରଚାର କରୁଥିଲେ ନିଜର ବକ୍ତବ୍ୟ । ପଚାସଢ଼ା ସମାଜ ବ୍ୟବସ୍ଥା ଯେ ଏ ମାନବ ଜାତିକୁ ପଶୁର ଜୀବନ ଜିଇଁବାକୁ ବାଧ୍ୟ କରିଛି , ସେ କଥାଟିକୁ ଖୁବ୍ ଭଲ ଭାବରେ ବୁଝିଥିଲେ ସାଥି କବି ଦାସୁରାମ । ସେ ବୁଝିଥିଲେ ମାନବ ସଭ୍ୟତାର ବିକାଶର ଧାରାକୁ । ସେ ବୁଝିଥିଲେ ଭାରତ ବର୍ଷରେ ଜନଗଣଙ୍କର ସମସ୍ୟାକୁ । ଓଡ଼ିଶାର ଜନଜାତିର ସମସ୍ୟାକୁ....... ଏଇମିତି ସବୁକିଛି । ତା ସହ ଏକଥା ମଧ ବୁଝିଥିଲେ ଯେ , ଉପରୋକ୍ତ ସମସ୍ୟାରୁ ମୁକ୍ତି ବି କିପରି ମିଳିପାରିବ । ତାଙ୍କ ଭାବନା ରାଇଜରେ ସେ ପଢ଼ିଥିଲେ ଋଷର ଅକ୍ଟୋବର ବିପ୍ଳବ ଓ ଚୀନର ମହାନ ବିପ୍ଳବ । ସେଇଥି ପାଇଁ ସେ ଠିକ୍ କରି ପାରିଥିଲେ ସମସ୍ୟାରୁ ମୁକ୍ତି ପାଇବାର ପଥ । ପୁନଶ୍ଚ ତାଙ୍କ ନିଜ ଜନଜାତି ଅଂଚଳର ମୂଳ ଭାଷା କୁଇ ହୋଇଥିବାରୁ , ସେଠିକାର ଜନଗଣଙ୍କ ପାଖରେ ନିଜ ବାର୍ତ୍ତା ପହଂଚାଇବା ପାଇଁ ସେଇ କୁଇ ଭାଷା ଯେ ନିତ୍ୟାନ୍ତ ଆବଶ୍ୟକ , ଏକଥା ମଧ ସେ ଜାଣିଥିଲେ । ଜନଗଣଙ୍କୁ ତାଙ୍କର ଦୁର୍ଦ୍ଦଶା କଥା କହିବା ବେଳେ , ତାଙ୍କରି ହୃଦୟକୁ ଛୁଇଁବା ପାଇଁ ଶାଣିତ ଅମୋଘ ଅସ୍ତ୍ର ହେଉଛି ଗୀତ । ଯଦି ତାହା ପଲ୍ଲୀ ଗୀତ ହୁଏ ,

ତେବେ ଆହୁରୀ ଗଭୀର ରୂପେ ଛୁଇଁ ପାରିବ ତାଙ୍କ ହୃଦୟକୁ । ସେଇଥି ପାଇଁ କବି ଦାସୁରାମ ବାଛିନେଇଥିଲେ କୁଇ ଭାଷାର ଗୀତ ଗୁଡ଼ିକୁ ଯାହା ସେ ନିଜେ ରଚନା କରୁଥିଲେ ଓ ସ୍ୱର ମଧ ନିଜେ ଦେଉଥିଲେ । ମାଓବାଦୀ ଚେତନାରେ ଜନଗଣଙ୍କୁ ଦିକ୍ଷୀତ କରାଇ , ହକ୍ ବା ଅଧିକାର ପାଇଁ କିପରି ଲଢ଼ିବାକୁ ହୁଏ , ସେ କଥା ସେ ପ୍ରଚାର କରୁଥିଲେ ତାଙ୍କ ଗୀତ ମାଧମରେ । ଜନଗଣଙ୍କ ପାଇଁ ସେବା କରି କରି କିପରି ଜୀବନ ଦେବାକୁ ହୁଏ ସେକଥା ସେ ଦେଖାଇ ଦେଲେ ତାଙ୍କ ଜୀବନ ଚର୍ଯ୍ୟାରେ ।

ହେଲେ ଆଜିବି ଲୋକେ ଅର୍ଦ୍ଧହାର ଅନାହାରରେ ସଢୁଛନ୍ତି । ଆଜିବି ମା ଓ ଭଉଣୀର ଦେହ ଅବରିବାକୁ କନା ଖଣ୍ଡେ ନାହିଁ । ସମୁଦ୍ରରେ ପାଣି ତ ବହୁତ । ହେଲେ ଆଜିବି ଲୋକେ ଶୋଷିଲା ଅଛନ୍ତି । ତେଣୁ , ହୁଏତ ଆଉ କେହି ଦାସୁରାମ ଏହାର ପ୍ରତିକାର କଥା କହୁଥିବେ । ଆସ କାନ ଖୋଲି ଶୁଣିବାର ଅଛି , ଆଖି ଖୋଲି ଦେଖିବାର ଅଛି .............. । ପୁଣି ଶେଷରେ ସେ ଗୀତରେ ସ୍ୱର ମିଶାଇବାର ଅଛି .............. ।



# ତାଙ୍କୁ ମୁଁ ଯେତିକି ଜାଣେ

-ଅଂକିତା

ଅଧା ସାମନ୍ତତାନ୍ତ୍ରିକ ଅଧା ଔପନିବେଶିକ ଭାରତର ଲୁଟେରା ଗୋଷ୍ଠି ଦଲାଲ୍ ପୁଁଜିପତି , ଜମିଦାର , ସାହୁକାରମାନେ ସାମ୍ରାଜ୍ୟବାଦର ଇଙ୍ଗିତରେ ଦେଶର ସର୍ବସ୍ୱ ଲୁଟିନେଇ ସାଧାରଣ ଜନତା ସହିତ ବିଶେଷକରି ଦେଶର ଆଦିମ ଅଧିବାସୀଙ୍କ ଜୀବନକୁ ଦୁର୍ବିସହ କରିଚାଲିଛନ୍ତି । ଏକଥା କେତେବା ସହିଥାନ୍ତେ ବ୍ରିଟିଶ ବିରୋଧି ଲଢାଇରେ ନିଜର ବୀରତ୍ୱ ଦେଖାଇଥିବା ମହାନ କୁଇ ବିପ୍ଲବୀ ଚକରା ବିଶୋଇ , ଦୋରା ବିଶୋଇର ବଂଶଧରମାନେ । ତେଣୁ ମଣିଷ ସମାଜକୁ ସମସ୍ତ ଶୋଷଣ ଶାସନରୁ , ଦମନ ଅତ୍ୟାଚାରରୁ ମୁକ୍ତ କରିବା ପାଇଁ ଅଂଟା ଭିଡ଼ିଲେ । ସେମାନଙ୍କ ମଧରେ ସେ ବି ଜଣେ । ସେ ମାର୍କ୍ସବାଦ-ଲେନିନବାଦ-ମାଓବାଦରେ ଅନୁପ୍ରାଣିତ ହୋଇ ବିପ୍ଳବୀ ଗୀତ ନାଚ ମାଧମରେ ଜନତାଙ୍କ ରକ୍ତରେ ବିପ୍ଳବର ବହ୍ନୀକୁ ପ୍ରଜ୍ୱଳିତ କଲା । ଜନତାଙ୍କ ସେବାରେ ନିଜ ଜୀବନକୁ ଉତ୍ସର୍ଗ କଲା ଏଇ ମଣିଷଟି ହେଉଛି କବି , ଗାୟକ , କୁଇଲିପିର ସ୍ରଷ୍ଟା , ଜମି ଆନ୍ଦୋଳନର ନେତା ଦାସୁରାମ । ଯାହାର ମୃତ୍ୟୁ ସଂବାଦ କିଛି ସମୟ ପାଇଁ ସ୍ତବ୍ଧ କରିଦେଇଥିଲା ସାଧାରଣ ଜନତାଙ୍କ ସହିତ , କବି , ସାହିତ୍ୟିକ ଓ ବୁଦ୍ଧିଜୀବି ମହଲକୁ ।

ଗରିବ ଘରର ଏହି ଯୁବକ ଜଣକ ନିଜ ତଥା ପଡ଼ୋଶୀଙ୍କ ଦୁଃଖ କଷ୍ଟରେ ଅତିବ ମ୍ରିୟମାଣ ହୋଇ ପଡୁଥିଲେ । ଶୋଷଣର କାରଣ ହିସାବରେ ପ୍ରଥମେ ସେ ଖୋଜି ପାଇଥିଲେ ସେଠାକାର ସାହୁକାର ଏବଂ ଜମିଦାର ମାନଙ୍କୁ । ତା' ସମାଜର ଲୋକ ଓଠରେ ଟିକେ ହସ , ପେଟରେ ମୁଠେ ଦାନା , ଦେହକୁ କନା ଦେବାକୁ , ଅର୍ଥାତ୍ ଲୋକଙ୍କ ଶ୍ରମାର୍ଜିତ ଜମିକୁ ବଦମାସ ଜମିଦାର ସାହୁକାରଙ୍କ ଠାରୁ ମୁକ୍ତ କରିବା ପାଇଁ ସେ ସି.ପି.ଆଇ(ମାଓବାଦୀ) ନେତୃତ୍ୱରେ ପରିଚାଳିତ ଜମି ଆନ୍ଦୋଳନରେ ନିଜକୁ ସାମିଲ୍ କରିଥିଲେ । ରାତି ଦିନକୁ ଏକକରି , ଭୋକଶୋଷର ତାଡ଼ନାକୁ ଖାତର ନକରି ଗାଁ ଗାଁରେ ସଂଗଠନ କଲେ । ଆନ୍ଦୋଳନ ଗଢ଼ିତୋଳିଲେ । ଜମିଦାରର ଜମିକୁ ଦଖଲ କରିବାରେ ସଫଳତା ଅର୍ଜନ କରିବା କିଛି କମ୍ କଥା ନୁହେଁ । ଏହି ଜମି ଆନ୍ଦୋଳନରେ ତାଙ୍କର ଭୂମିକା ଅବିସ୍ମରଣୀୟ ।

କେବଳ ଏତିକି ନୁହେଁ , ସେ ଆଜିର ଭୋଟ ସର୍ବସ୍ୱ ସଂସଦୀୟ ବ୍ୟବସ୍ଥା ବା ଭଣ୍ଡ ଗଣତନ୍ତ୍ରର ପର୍ଦ୍ଦାଫାସ କରନ୍ତି ଗୀତ ମାଧମରେ- ଜନତାଙ୍କ ସମ୍ମୁଖରେ । ତତ୍ସହିତ ସରକାରଙ୍କର ସର୍ବଗ୍ରାସି ନୀତି ଫଳରେ ଜନଗଣଙ୍କ ବିସ୍ଥାପନ ସମସ୍ୟା , ଦୁର୍ନିତି , ନିର୍ଯ୍ୟାତନା , କୃଷକ ମାରଣ ନୀତି , ଶ୍ରମିକ ଛଟେଇ ବିରୁଦ୍ଧରେ ସେ ଆନ୍ଦୋଳନ ସୃଷ୍ଟି

କରୁଥିଲେ । ଦକ୍ଷୀଣ ଓଡ଼ିଶା କାହିଁକି , ସମଗ୍ର ଭାରତବର୍ଷରେ କ୍ରାନ୍ତିକାରୀ ଆନ୍ଦୋଳନରେ ତାଙ୍କର ଅବଦାନ ମହାନ ।

କିଛି ଲୋକ ନିଜ ଭାଷାକୁ ଛୋଟ ମନେକରି , ଅନ୍ୟଭାଷା ବିଶେଷ କରି ଇଂରାଜୀ ଭାଷାର ଗୋଡ଼ାଣିଆ ହୋଇ ଯାଉଛନ୍ତି । ଏତେ ବେଳେ ନିଜ ଭାଷା ତଥା ସଂପ୍ରଦାୟକୁ ଭଲପାଇ ବସନ୍ତି ଦାସୁ । ତେଣୁ କୁଇ ଭାଷାର ଲିପି ସୃଷ୍ଟି କରି କୁଇ ଲୋକଙ୍କୁ ଶିକ୍ଷିତ କରିବା ପାଇଁ ଉଦ୍‌ବେଳିତ ହୋଇଉଠିଥିଲେ ସେ । ଶେଷରେ ତାଙ୍କର ଉଦ୍ୟମ ସଫଳ ହୋଇଥିଲା । ସେ ୧୬ ମାସର ବନ୍ଦୀ ଜୀବନ ସମୟରେ ସୃଷ୍ଟି କରିଥିଲେ କୁଇ ଲିପି । ତାଙ୍କ ରଚିତ ଲୋକ ଗୀତ , ଜନ ଜୀବନକୁ ନେଇ କବିତା ଗୁଡ଼ିକ ତାଙ୍କ ମହାନ ସୃଷ୍ଟି ମଧ୍ୟରୁ ଗୋଟିଏ ଗୋଟିଏ । ଦାସୁର ଲୋକପ୍ରିୟତାରେ ଭୟଭୀତ ହୋଇ ସରକାର ୧ ଲକ୍ଷ ଟଙ୍କା ମୁଣ୍ଡଜାମିନ୍ ରଖିଥିଲା । ତାଙ୍କୁ ଧରିବା ପାଇଁ ପାନିଆ ତଲାସି ଚାଲିଥିବା ସମୟରେ , ଜନତା ତାଙ୍କୁ ଲୁଚାଇରଖି ପୋଲିସର ସାମନା କରୁଥିଲେ । ଯାହାକି ତାଙ୍କର ଲୋକପ୍ରିୟତାର ନମୁନା ।

ପୃଥିବୀର ବୃହତମ ଗଣତନ୍ତ୍ରର ଡିଣ୍ଡିମ ପିଟୁଥିବା ଏ ଦେଶରେ , ଏବେବି ଲୋକ ଅଖାଦ୍ୟ ଖାଇ ମରୁଛନ୍ତି । ନତୁବା ଅନାହାରରେ ମରୁଛନ୍ତି । ମହାମାରୀରେ ମରୁଛନ୍ତି । ଯାହାର ଶିକାର ହେଲେ ଆମର ପ୍ରୀୟ ସାଥୀ ଦାସୁରାମ । ତାଙ୍କ ମୃତ୍ୟୁର କାରଣ କେବଳ ମହାମାରୀ ନୁହେଁ । ପୋଲିସ ଦମନ ହେତୁ ସେ ଠିକ୍ ସମୟରେ ଚିକିତ୍ସା ପାଇପାରିଲେନି । ତାଙ୍କ ମୃତ୍ୟୁ ପାଇଁ ଦାୟୀ ଏ ସରକାର , ଏ ବ୍ୟବସ୍ଥା ।

ଶେଷରେ , ବିପ୍ଳବୀ ମରିଯାଏ , କିନ୍ତୁ ବିପ୍ଳବ ମରେନା । ଆଜିର ଏହି ଦିନରେ ସମସ୍ତେ ଆମର ପ୍ରିୟ ସାଥୀଙ୍କୁ ଶ୍ରଦ୍ଧାଂଜଳୀ ଦେବା ସହିତ , ଶପଥ ନେବା ତାଙ୍କ ଅଧୁରା ସ୍ୱପ୍ନକୁ ପୁରା କରିବା ପାଇଁ ।

**ରାଇପଙ୍ଗା ଠାରେ ଦାସୁରାମଙ୍କ ପ୍ରତିମୂର୍ତ୍ତୀ ସ୍ଥାପନ ପାଇଁ ସ୍ୱଇଚ୍ଛାରେ ସାହାଯ୍ୟ କରନ୍ତୁ ।**

**ଶହୀଦ ଦାସୁରାମ ସ୍ମୃତି କମିଟି**

# କାହାଣୀ ଏକ ଶହୀଦର

-ସୋନୁ

ଦୁଃଖ ଆସେ , ମାତ୍ର ଏମିତି ଆସିବ ବୋଲି କେହି ବିଶ୍ୱାସ କରିପାରି ନଥିଲେ । ଯାହାକୁ ପାଇବା ପାଇଁ ମୁଣ୍ଡ ଜାମିନୀ ଲକ୍ଷେ ଟଙ୍କା ଏବଂ ସୁସଜ୍ଜିତ ସରକାରୀ ଗୁଣ୍ଡା ବାହିନୀ କ୍ଲାନ୍ତ ହୋଇ ପଡ଼ିଥିଲେ , ତାକୁ ସାମାନ୍ୟ ଝାଡ଼ାବାନ୍ତିଟା ଏତେ ସହଜରେ ନେଇଯିବ ବୋଲି କିଏ କାହିଁକି ବିଶ୍ୱାସ କରିବ । କିନ୍ତୁ ସେପ୍ଟେମ୍ବର ୧୦ ଥିଲା ତା'ର ବାସ୍ତବତା । ସବୁ କିଛି ଓଲଟ ପାଲଟ ହୋଇଗଲା । କିଛି ସମୟ ପାଇଁ ଓଡ଼ିଶା  ବିପ୍ଳବୀ ସଂଗ୍ରାମ ସ୍ତବ୍ଧ ହୋଇଗଲା । ଖୋଜି ବସିଲା ତା'ର ଗର୍ବ , ଗୌରବକୁ । ହେଲେ ସିଏ ତା'ର ଖଂଜଣୀ ଆଉ ଗୀତକୁ ଛାଡ଼ି ଚାଲିଯାଇଥିଲା ବହୁ ଦୂରକୁ । ଯେଉଁଠୁ ଆଉ ଶରୀରରେ ଫେରିବାର ସମ୍ଭାବନା ନଥିଲା । କେବଳ ସେହି ଖଂଜଣି ଆଉ ଗୀତ ତା'ର ସ୍ମୃତି ବହନ କରୁଥିଲା ।

ଏସବୁ ହେଉଛି ଆମର ଅତି ପରିଚିତ କୁଇ କବି ଦାସୁରାମ ମାଲେକାଙ୍କ ଅକାଳ ବିୟୋଗର କରୁଣ କାହାଣୀ । ଯେଉଁଥି ପାଇଁ ଆଜି ବିପ୍ଳବୀ ଶ୍ରମଜୀବି ଜନତା ତଥା ଚାଷୀ ମୂଲିଆଙ୍କ ଘରେ ଘରେ ଶୋକର ଛାଇ । ଏହାଦ୍ୱାରା ଓଡ଼ିଶା  ବିପ୍ଳବୀ ଓ ଜନବାଦୀ ଆନ୍ଦୋଳନର ବିରାଟ କ୍ଷତି ଘଟିଛି ।  ଜଣେ କବି , ଗାୟକ ଏବଂ ସାଂସ୍କୃତିକ କର୍ମୀ ହିସାବରେ ଓଡ଼ିଶାର  ଘରେ ଘରେ ବେଶ୍ ପରିଚିତ ଏହି ବ୍ୟକ୍ତିତ୍ୱ । ଏହି ଅମ୍ଳାନ ପ୍ରତିଭା ଗଜପତି ଜିଲ୍ଲାର ଗରିବ ଆଦିବାସୀ ପରିବାରରେ ଜନ୍ମ ହୋଇଥିଲେ ମଧ , ସେ ଥିଲେ ଅଗ୍ରଣୀ ଯୋଦ୍ଧା ।  ଅଭାବ ଅନାଟନ ଯୋଗୁଁ ସପ୍ତମରୁ ପଢା ଛାଡ଼ିଥିଲେ ବି , ସେ ହଜି ଯାଇନଥିଲେ ସଂକୀର୍ଣ୍ଣତାରେ । ସୁଦୂରପ୍ରସାରୀ ଚିନ୍ତା ଚେତନାକୁ ଅସ୍ତ୍ର କରି ଲାଗିପଡ଼ିଥିଲେ ସ୍ଥାୟୀ ସମାଧାନ ନିମନ୍ତେ । ତେଣୁ ଜନ ଚେତନାରେ ନିଆଁ ଧରାଇବା ପାଇଁ ସେ ବାଛିନେଇଥିଲେ ସଂସ୍କୃତି ବିଭାଗକୁ । ସାଂସ୍କୃତିକ ବାହିନୀକୁ ଗୀତ ନାଚର ହତିଆର ଧରେଇ ଲଢଉଥିଲେ ଶୋଷକ ଶାସକ ଶ୍ରେଣୀ ବିରୁଦ୍ଧରେ । ପ୍ରଚଳିତ ସମାଜ ବ୍ୟବସ୍ଥା ବିରୁଦ୍ଧରେ ପରିବର୍ତ୍ତନକାମୀ ଏହି କଳାକାର ଥିଲେ ଓଡ଼ିଶାର  ଗଦ୍ଦର । ଶାଗୁଆ ଲୁଙ୍ଗି ଆଉ ନାଲିଆ ଗେଂଜି ମଧରେ ମଜିଯାଇ , ସଭା ସମିତିରେ  ସେ ତୋଳି ଧରୁଥିଲେ ଦୁଃଖୀ ଜନତାର ବ୍ୟଥା ଓ  ବେଦନାକୁ , ନେତା-ମନ୍ତ୍ରୀଙ୍କର ଛଦ୍ମ ଆବରଣକୁ । ତୋଳି ଧରୁଥିଲେ ଯୁଗ ଯୁଗ ଧରି ମଣିଷ ସମାଜ ଉପରେ ହେଉଥିବା ଶୋଷଣ , ଦମନ, ପୀଡନ ଓ ଏସବୁର ପ୍ରତିରୋଧକୁ ।  ମାର୍କ୍ସବାଦ- ଲେନିନବାଦ-ମାଓବାଦରେ ବିଶ୍ୱାସୀ ଏହି କବି , ଶ୍ରେଣୀ ସଂଗ୍ରାମ ପାଇଁ ଛାଡି ଦେଇ ଯାଇଛନ୍ତି ଜୀବନ ସଂଗ୍ରାମ ଉପରେ ପର୍ଯ୍ୟବେକ୍ଷିତ ତାଙ୍କର ସୃଜନୀ ।  ଯେଉଁ ସୃଜନୀରେ ରହିଛି ନିର୍ଯ୍ୟାତିତ , ଅବହେଳିତ ମଣିଷଙ୍କର ଦୈନନ୍ଦିନ

ଜୀବନର ବାସ୍ତବତା ଏବଂ ମୁକ୍ତିର ବୈଜ୍ଞାନିକ ଗାଥା । କୁଇ ଓ ସରା ଆଦିବାସୀଙ୍କ ପ୍ରାଣର ସ୍ପନ୍ଦନ ଏବଂ ସାଂସ୍କୃତିକ ପରମ୍ପରାର ଉଚିତ ଦାୟାଦ କବି ଦାସୁରାମ ଶୋଷକ-ଶାସକ ନଜରରେ ଥିଲେ ଜଣେ ମାଓବାଦୀ , ପୁଣି ଦେଶଦ୍ରୋହୀ । ବିଭିନ୍ନ ମିଥ୍ୟା କେଶ୍ ରେ ତାଙ୍କୁ ଫସାଇ ବନ୍ଦି କରାଗଲା । ମାନସିକ , ଶାରୀରିକ ନିର୍ଯ୍ୟାତନା ଦିଆଯାଇଥିଲା , ଯେପରିକି ସେ ବିପ୍ଳବୀ ସଂଗ୍ରାମରୁ ଓହରିଯାଆନ୍ତି । ମାତ୍ର ନିର୍ଭୀକ ଏହି ବୀର ପୋଲିସର ଥାର୍ଡ ଡିଗ୍ରୀକୁ ସିଂହ ଭଳି ସାମନା କରି ନିର୍ଦ୍ଦୋଷରେ ଖଲାସ ହୁଅନ୍ତି ଏବଂ ଜାରି ରଖନ୍ତି ତାଙ୍କର ଜନ ଆନ୍ଦୋଳନ । ଯ'ଦ୍ୱାରା ଶୋଷକ ଶ୍ରେଣୀ ଆତଙ୍କିତ ହୋଇ , ତାଙ୍କୁ ବିଭିନ୍ନ ମିଥ୍ୟା କେଶ ରେ ମୋଷ୍ଟ ଓ୍ୱାଂଟେଡ୍ ଘୋଷଣା କରି ମୁଣ୍ଡଜାମିନୀ ପାଇଁ ରଖନ୍ତି ଲକ୍ଷେ ଟଙ୍କା । ଫଳରେ କବି ଭୂମିଗତ ହେବାକୁ ବାଧ ହୁଅନ୍ତି । ଭୂମିଗତ ହୋଇ ସେ ତାଙ୍କର ସାଂସ୍କୃତିକ ଦଳ ସହାୟତାରେ ବିପ୍ଳବୀ ଜନଆନ୍ଦୋଳନର ପ୍ରଚାରକୁ ରାୟଗଡ଼ା ଗଜପତି ଜିଲ୍ଲାର ଘରେ ଘରେ ପହଁଚାଇବାରେ ହୁଅନ୍ତି ସକ୍ଷମ । ମାତ୍ର ହଠାତ୍ ଏ ମହାମାରୀ ତାଙ୍କୁ କରିଦେଲା ପଙ୍ଗୁ । ମହାମାରୀ ପିଡୀତଙ୍କ ସେବାରେ ଆକ୍ରାନ୍ତ ହୋଇ ସେ ହୋଇଗଲେ ଶହୀଦ୍ ।

ସାମନ୍ତବାଦ ଓ ସାମ୍ରାଜ୍ୟବାଦର ଶୋଷଣରେ କିଭଳି ଆଦିବାସୀ ଓ ଅନ୍ୟାନ୍ୟ ଖଟିଖିଆ ଶ୍ରେଣୀ ତା'ର ଶ୍ରମ ଅର୍ଜିତ ସମସ୍ତ ସଂପତିକୁ ହରାଇବସେ ଏବଂ ଶେଷରେ ତାକୁ ପୋକ ମାଛି ଭଳି ମରିବାକୁ ହୁଏ , ଏକଥା କବି ଓ ତାଙ୍କ ସାଂସ୍କୃତିକ ଦଳ ଗାଁକୁ ଗାଁ ଯାଇ ବୁଝାଇବସନ୍ତି । 'ଏକତା ହିଁ ବଳ' ର ଉଦାହରଣ ଦେଇ ସଂଗଠିତ କରନ୍ତି ଜନତାଙ୍କୁ । ନିଜର ଇଜତ , ଅଧିକାର ପାଇଁ ଲଢାଇ ହିଁ ଏକମାତ୍ର ରାସ୍ତା ବୋଲି ଇତିହାସ ବଖାଣନ୍ତି । ଦୀର୍ଘସ୍ଥାୟୀ ଜନଯୁଦ୍ଧକୁ ଆପଣେଇ ଚଳମାନ କୃଷି ବିପ୍ଳବକୁ ଆଗେଇ ନେବାକୁ ପ୍ରୋତ୍ସାହିତ କରନ୍ତି । ଲୋକମାନଙ୍କ ସୁଖ , ଦୁଃଖର ସାଥୀ ହୋଇ ହଜେଇ ଦିଅନ୍ତି ନିଜକୁ ଲୋକଙ୍କ ଭିତରେ । ତେଣୁ ସବୁବେଳେ ଖୋଜା ପଡୁଥିଲା କବିଙ୍କୁ । ତାଙ୍କ ଜୀବନଶୈଳୀ ଅତ୍ୟନ୍ତ ସରଳ ଆଉ ନିରାଡମ୍ବର । ଲୋକଙ୍କ ପାଖେ ହାଜର ହେବାରେ ସେ ଥିଲେ ଆଗ ଧାଡ଼ିର କର୍ମୀ । ଶୋଷଣ ବିହୀନ ସମାଜ ଗଠନ କରିବା ଥିଲା ତାଙ୍କ ଜୀବନର ଏକମାତ୍ର ବ୍ରତ । ସେଥିପାଇଁ ସେ ଶୟନେ,ସପନେ,ଜାଗରଣେ ବିପ୍ଳବକୁ ବିଳିବିଳଉଥିଲେ । ଯାହାକି ତାଙ୍କର ଲେଖା ଏବଂ କାର୍ଯ୍ୟଶୈଳୀରେ ଦେଖିବାକୁ ମିଳେ । ସବୁବେଳେ ସେ ଜନତାଙ୍କୁ ବିପ୍ଳବାଭିମୁଖୀ କରାଇବାକୁ ନିଜର ଚାରିପାର୍ଶ୍ୱକୁ ଗଭୀର ନିରିକ୍ଷଣ କରନ୍ତି ଏବଂ କଲମରେ ତାକୁ ରୂପ ଦିଅନ୍ତି । କଲମ ଦ୍ୱାରା କଲମକୁ ମୁକ୍ତି କରିବା ନିହାତି ଆବଶ୍ୟକ ବୋଲି କହୁଥିଲେ । କୁଇ ଭାଷା ଓ ସଂସ୍କୃତିର ବିକାଶ ପାଇଁ , ସେ ଜେଲ୍‌ର କାଳ କୋଠରୀରେ ଅଙ୍ଗାର ଏବଂ କାନ୍ଥର ସାହାରା ନେଇ ସୃଷ୍ଟି କଲେ କୁଇଲିପି । ଯେପରି କୁଇଜାତି

ପାଇପାରିବ ତା'ର ଆତ୍ମ ପରିଚୟ । ତାଙ୍କର ମହାନତା ଏବଂ ତ୍ୟାଗପୂତ ଜୀବନକୁ ଭାବିଲା ବେଳକୁ ନିଜକୁ ବହୁତ ଛୋଟ ଲାଗେ , ମଥା ନଇଁଯାଏ । ପ୍ରକୃତରେ ଏହି ସ୍ୱାଭିମାନୀ କବି ଆଜି ଆମର ଅମର ଶହୀଦ୍ , ଆଦର୍ଶ । ମାତ୍ର ୩୨ ବର୍ଷରେ ଶୋଷଣ ବିରୋଧୀ ଲଢାଇରେ ବଳିଦାନ ଦେଇ ଗୁଡରିପଙ୍କା ଗାଁକୁ କରିଦେଇ ଗଲେ ମହାନ୍ । ତାଙ୍କର ଜୀବନ ହୋଇଗଲା ସାର୍ଥକ ।

ରାୟଗଡ଼ା ଓ ଗଜପତି ଥିଲା ତାଙ୍କ ଜନ ଆନ୍ଦୋଳନର ମୁଖ୍ୟ କର୍ମକ୍ଷେତ୍ର । ମାତ୍ର ଶୋଷକ-ଶାସକ ବର୍ଗର ବର୍ବର ଦମନ , ପୀଡନ ଏବଂ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ଯେକୌଣସି ଜାଗାରେ ହେଲେବି , ସେ ସାମିଲ୍ ହେବାକୁ ଚେଷ୍ଟା କରୁଥିଲେ । ତାଙ୍କର କଲମ ଏବଂ ଖଜଣୀ ଅନବରତ ଗଂପି ଉଠୁଥିଲେ । ଯେଉଁ କଲମ ଏବଂ ଖଜଣୀକୁ ଭୟକରି ତାଙ୍କର ସମସ୍ତ କାର୍ଯ୍ୟକଳାପକୁ ନିଷିଦ୍ଧ କରିଦିଆଗଲା । କଥା କହିବା ଯେ ଜନ୍ମଗତ ମୌଳିକ ଅଧିକାର , ତାକୁ ହତ୍ୟା କରାଗଲା । କବିଙ୍କର ଶହୀଦତ୍ୱ ସୂଚାଇ ଦିଏ , ବୈଷମ୍ୟ ସମାଜ ବ୍ୟବସ୍ଥାକୁ ଏବଂ ତା'ର ରାଷ୍ଟ୍ରଯନ୍ତ୍ରକୁ । ପ୍ରକୃତରେ ଦେଖିବାକୁ ଗଲେ କବିଙ୍କ ଅକାଳ ବିୟୋଗ ପାଇଁ ପୋଲିସର ଆତଙ୍କବାଦ ହିଁ ଦାୟୀ । ଜନତା ଜନାର୍ଦ୍ଦନ ଅତି ସୁରକ୍ଷିତ ଭାବେ ଆଜି ପର୍ଯ୍ୟନ୍ତ ତାଙ୍କୁ ରଖିଥିଲେ ବି , ରୋକିପାରିଲେନି ମହାମାରୀରୁ । ବାଶଦାରା ଜମି ଆନ୍ଦୋଳନରେ ତାଙ୍କର ଭୂମିକା ଅବର୍ଣ୍ଣନୀୟ । ଜମିଦାର , ସାହୁକାର ମାନଙ୍କ ଶୋଷଣର ଫିସାଦକୁ ମାତୃଭାଷା କୁଇରେ ବୁଝାଇ ଲୋକଙ୍କୁ ଏକାଠି କରି ଫସଲ ଦଖଲ କରିବାରେ ସେ ଥିଲେ ଜଣେ ଆଗୁଆ ନେତା । ଜମି , ଜଳ , ଜଙ୍ଗଲର ପ୍ରକୃତ ଅଧିକାରୀ ହେଉଛନ୍ତି ଆଦିବାସୀ , ଏହାହିଁ ଥିଲା ତାଙ୍କର ଆଦିବାସୀଙ୍କ ପ୍ରତି ଆହ୍ୱାନ । ପୁଁଜିପତିଙ୍କ ସ୍ୱାର୍ଥରେ ବିସ୍ଥାପିତ ହେଉଥିବା ଗରିବ ଲୋକଙ୍କ ସ୍ୱାର୍ଥରେ ସେ ଝାମ୍ପି ପଡୁଥିଲେ ବିସ୍ଥାପନ ବିରୋଧୀ ଆନ୍ଦୋଳନରେ । ମୁଖ୍ୟତଃ ଗରିବ ଲୋକଙ୍କ ମୌଳିକ ଅଧିକାର ପ୍ରଶ୍ନରେ ତାଙ୍କର ଉପସ୍ଥିତି ସେ ଜାହିର କରିବାକୁ ଚେଷ୍ଟା କରୁଥିଲେ । ମେହନତୀ ମଣିଷ ଶ୍ରମ ଦେଇ ସବୁକିଛି ସୃଷ୍ଟି କରେ , ଅଥଚ ସେ ହୁଏ ସବୁଥିରୁ ବଂଚିତ ! ଏହାହିଁ ଥିଲା ତାଙ୍କ ଲେଖନୀର ପରିଭାଷା । ମୋଟାମୋଟି ତାଙ୍କର ଜୀବନ ଥିଲା ଦେଶକୁ ଗୋଲାମୀର ଶୃଙ୍ଖଳା ରୁ ମୁକ୍ତ କରିବା ପାଇଁ ସଂପୂର୍ଣ୍ଣ ଉତ୍ସର୍ଗୀକୃତ । ସେଥିପାଇଁ ସେ ପରିବାରର ମୋହ ତ୍ୟାଗ କରି କଲମ ଓ ଖଜଣି ଧରି ବାହାରି ଆସିଥିଲେ ସଂଗଠନ କାମରେ । ଶେଷ ଜୀବନରେ ସେ ସାମିଲ ହୋଇ ଯାଇଥିଲେ ସିପିଆଇ(ମାଓବାଦୀ) ର ବାଶଦାରା ଡିଭିଜିନାଲ୍ କମିଟି ସଦସ୍ୟ ହିସାବରେ । କଲମ ସହ ଜନତାଙ୍କ ମୁକ୍ତି ପାଇଁ ଉଠାଇବାକୁ ହେବ ହତିଆର , ଏହା ପ୍ରତ୍ୟକ୍ଷରେ ଘୋଷଣା କରିଥିଲେ ।

ଆପୋଷହୀନ ଧାରାର ଏହି ମହାନ ଯୋଦ୍ଧାଙ୍କ ଅକାଳ ଶହୀଦତ୍ୱ ତାଙ୍କର ଆଭିମୁଖ୍ୟକୁ ଆହୁରି ବଳିଷ୍ଠ ଓ ଶାଣିତ କରିବ , ଏହା ନିଃସନ୍ଦେହ । ତେଣୁ ତାଙ୍କରି ପଦାଙ୍କ ଅନୁସରଣ କରି ତାଙ୍କର ଶୂନ୍ୟସ୍ଥାନ ପୂରଣ କରିବା ହେବ , ତାଙ୍କ ପ୍ରତି ପ୍ରକୃତ ଶ୍ରଦ୍ଧାଞ୍ଜଳି । ବ୍ୟବସ୍ଥା ବିରୋଧୀ ଆନ୍ଦୋଳନକୁ ପ୍ରଜ୍ୱଳିତ କରିବା ହେବ ତାଙ୍କ ଜୁଇର ସାର୍ଥକତା । ତାଙ୍କ ଲାଲ୍ ବ୍ୟାନିଅନ୍ କୁ ଲାଲ୍‌କିଲ୍ଲାରେ ଲାଲ୍‌ପତାକା କରି ଉଡ଼ାଇ ପାରିଲେ , ସ୍ମରଣ ସଭା ପାଇବ ସମ୍ମାନ । କଲମ କୁ ବର୍ଚ୍ଛା କରି ତାହା ଦ୍ୱାରା ଶତ୍ରୁର ବକ୍ଷ ଭେଦ କରି, ଗରିବ ମୁହଁରେ ହସର ଫୁଲ ଫୁଟାଇ ପାରିଲେ , ତାଙ୍କ କଲମ ହେବ ଧନ୍ୟ । ସୁପ୍ତ ମଣିଷଙ୍କୁ ଜାଗ୍ରତ କରିପାରିଲେ ଝଂଜଣି ହେବ ଆଦୃତ । କବି ଦାସୁରାମ ମରି ବି ଅମର ରହିବେ ମେହନତି ମଣିଷର ମାନସପଟରେ। ଗାଁରେ , ସହରରେ , କ୍ଷେତ ଖମାରରେ , କଳ କାରଖାନାରେ , ସବୁଠି ଦାସୁ ହିଁ ଦାସୁ । ତେଣୁ ପାଠକେ , କର୍ତବ୍ୟ ଜାଗାକୁ ଯିବା ହେବ ହିଁ କବିଙ୍କ ଦୁଃଖର ପରିସମାପ୍ତି । ଓଡ଼ିଶାର ବିପ୍ଲବୀ ସଂଗ୍ରାମ ମଧ ଚାହେଁ ଏହି କ୍ଷତିର ତୁରନ୍ତ ଭରଣା । କହିବା ବାହୁଲ୍ୟ , କାନ୍ଦଣା ଆମର କ'ଣ ତାହା ସମୟ କହିବ । କାରଣ ସମୟ ସବୁବେଳେ ଆଶାୟୀ , ଯିଏ ଆସିଲେ ନ ଆସିଲେ ବି ସିଏ ଆଗେଇ ଚାଲେ । ଆଗେଇ ଚାଲେ ପୁରୁଣାକୁ ବିଦାୟ ଦେଇ , ନୁଆ ସନ୍ଧାନରେ । ପାଇଗଲେ ବହୁତ ଖୁସି ହୁଏ । ହଜେଇବାର ଗ୍ଲାନି ପୋଛି ଦିଏ । କାହିଁକିନା ନୂଆରେ ଦେଖେ ହଜାର ହଜାର ଦାସୁକୁ । ହଜାର ହଜାର ଝଂଜଣି ଆଉ କଲମକୁ । ହଜାର ହଜାର ଶାଗୁଆ ଲୁଙ୍ଗି ପିନ୍ଧା ଲାଲ୍ ବ୍ୟାନିଅନ୍ ଧାରୀ , ଯାହାଙ୍କ ହାତରେ ଥାଏ ଦାଆ ହାତୁଡିର ଲାଲପତାକା । ବାସ୍ ଏତିକିରେ ପାଇଯାଏ ତା' ହଜିଲା ଅତୀତ , ପୁଣି ସ୍ୱପ୍ନ ଦେଖେ ଗଢ଼ିବାକୁ ଲାଲ୍ ଫୌଜ ଓ ଲାଲ୍ ଇଲାକା । ଶତ ସିଂହର ବଳ ନେଇ ଆଗେଇ ଚାଲେ ଶୋଷକର କବର ଆଡକୁ । ଯେଉଁଠି ସେ ଦେବ ପୂର୍ଣ୍ଣଚ୍ଛେଦ । ଶହୀଦର ରକ୍ତ , ହେବ ନାହିଁ ବ୍ୟର୍ଥ ।



# ବିପ୍ଳବୀ କବି ସାଥୀ ଦାସୁରାମ

*-ଆକାଶ*

ସାଥୀ ଦାସୁରାମକୁ ପ୍ରଥମେ ୧୯୯୮ ମସିହାରେ ଆମ ନିଜ ଗାଁରେ ଆସିଥିଲା ବେଳେ ଦେଖା ହୋଇଥିଲା । ସେ ଦିନ ବିପ୍ଳବୀ ଗୀତ ଗାଇ ଗାଁ ବୈଠକ କରି ଦେଶର ସମସ୍ୟା ବିଷୟ ନେଇ ଆମକୁ କହିଥିଲେ । ସାଥୀ ଏକ ଗରିବ ଆଦିବାସୀ କୁଇ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଗଜପତି ଜିଲ୍ଲା ମୋହନା ବ୍ଲକ ରାଇପାଙ୍ଗା ପଂଚାୟତର ମହାଗୁଡ଼ି ଗ୍ରାମରେ ତାଙ୍କର ଜନ୍ମ । ମହାଗୁଡ଼ି ଗାଁରୁ ପରେ ଗୁଡ଼ିପାଙ୍ଗା ଗ୍ରାମକୁ ସ୍ଥାନାନ୍ତରିତ ହୋଇଥିଲେ । ତାଙ୍କ ଛୋଟ ବୟସରେ ପିତାଙ୍କର ମୃତ୍ୟୁ ହୋଇଥିଲା । ମାଆଙ୍କର ସ୍ନେହ ମମତା ପାଇ ସେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ ।

ପାର୍ଟି ସଂପର୍କରେ ଆସିବା ପୂର୍ବରୁ ମଧ ଅନେକ ଖ୍ରୀଷ୍ଟଧର୍ମର ଭଜନ ଗୁଡ଼ିକ ଲେଖୁଥିଲେ , ଗାଉଥିଲେ ଓ ଖଂଜଣି ବଜେଇ ଲୋକଙ୍କ ମନକୁ କିଣିନେଉଥିଲେ । ସାଥୀ ଦାସୁରାମ ଆମକୁ କହନ୍ତି , ପ୍ରଥମେ ଖ୍ରୀଷ୍ଟିଆନ୍ ଧର୍ମ ଲୋକ ଆସି ଧର୍ମଗ୍ରହଣ କରାଇ ମୋତେ ପ୍ୟାଂଟ ପିନ୍ଧାଇଥିଲେ । ପରଦିନ ପ୍ୟାଂଟ ପିନ୍ଧିଛନ୍ତି , ହଠାତ୍ ଝାଡ଼ା ଲାଗିଛି , ପ୍ୟାଂଟ କାଢ଼ି ଝାଡ଼ା ବସିବା ପାଇଁ ଚେଷ୍ଟା କରିଛନ୍ତି , ମାତ୍ର ପ୍ୟାଂଟ ଖୋଲିନି । ସେ ସମୟରେ ବହୁତ କଷ୍ଟ ଲାଗିଥିଲା । ପ୍ୟାଂଟ ପିନ୍ଧା ପରେ ଧିରେ ଧିରେ ରୋଡ଼ ପାଖକୁ ଓହ୍ଲାଇଛନ୍ତି । ସେ ସମୟରେ ଟିକି ଟିକି ପିଚୁରାସ୍ତା ଉପରେ ଏକ କାର୍ ଗର୍ଜନ କରି ଅତି କ୍ଷୀପ୍ର ଗତିରେ ଚାଲି ଯାଉଥିବା ଦେଖି , ବୋଧେ ଏ ଜନ୍ତୁ ତାଙ୍କୁ ଖାଇବାକୁ ଆସୁଛି ଭାବି , ନିଜେ ପୁଣି ଅତି କ୍ଷୀପ୍ର ବେଗରେ ଧାଇଁ ଯାଇଥିଲେ । ଏପରି ପଛୁଆ ସମାଜରୁ ଆସି ପାର୍ଟିର ସଂପର୍କ ଦେଇ ସେ ଜଣେ ମହାନ ବିପ୍ଳବୀ କବି ହୋଇ ପାରିଥିଲେ । ସାଥୀଙ୍କର ଭାରତ ବର୍ଷ ପାଇଁ ତଥା ଲୋକଙ୍କ ପାଇଁ ପ୍ରେମ ଥିଲା । କୁଇ ଭାଷାକୁ ଲିଖିତ ଭାଷା ରୂପେ ପରିଣତ କରିବା ମଧ ତାଙ୍କର ସ୍ୱପ୍ନ ଥିଲା । କୁଇ ସଂସ୍କୃତି ସହ ସେ ଅନ୍ୟାନ୍ୟ ସଂସ୍କୃତିକୁ ମଧ ଗୁରୁତ୍ୱ ଦେଉଥିଲେ । ବାଣଦାରା ଡିଭିଜନରେ ପ୍ରଥମରୁ ନେତୃତ୍ୱ ନେଇ କାମ ଆରମ୍ଭ କରି, ସଂଗଠନ ଓ ପାର୍ଟି ବଢ଼ାଇବା ବ୍ୟକ୍ତି ଥିଲେ ସେ । ସେ ଯେଉଁ ଗାଁକୁ ଯାଆନ୍ତୁ ନା କାହିଁକି , ସେ ଗାଁରେ ଲୋକଙ୍କୁ ସାଙ୍ଗେ ବୁଟି ନେଉଥିଲେ । ସେ ଗୀତ , ନାଚ ଆରମ୍ଭ କଲେ ପ୍ରତି ଗାଁର ବୃଦ୍ଧ ବୃଦ୍ଧା , ଯୁବକ , ଯୁବତୀ ଠାରୁ ଆରମ୍ଭ କରି ଛୋଟ ପିଲା ଯାଏଁ ସମସ୍ତେ ଅଧା ରାତି ପର୍ଯ୍ୟନ୍ତ ଉଜାଗର ରହିଯାଉଥିଲେ । ସେ ଆସୁଛି ଶୁଣି , କିମ୍ବା ଜାଣିଲେ ଶ୍ୱଶୁର ଘର କୁଣିଆ ଯିବା ବ୍ୟକ୍ତି ମଧ ଯାଉନଥିଲା । ସେ ଗୀତ ଗାଇ ଖଂଜଣୀ ବଜାଇଲେ ନାଚିବାର ଇଛା ନଥିବା ବ୍ୟକ୍ତି ମଧ ନାଚିବାକୁ ଯାଇ ବିପ୍ଳବୀ ଗୀତରେ ମଜି ଯାଉଥିଲା ।

ସାଥୀ ଯେଉଁଆଡ଼େ ଯାଉଥିଲେ ପାର୍ଟିର ପାଟି ପରି କହିଯାଉଥିଲେ । ତାଙ୍କୁ କିଛି କଷ୍ଟ ମଧ ଲାଗୁନଥାଏ । ସବୁବେଳେ ଗାଁରୁ ଅନ୍ୟ ଗାଁକୁ ପାହାଡ଼ , ପର୍ବତ , ନଦୀ , ଝରଣା , ବିଲମାଳ , ଲଟାବୁଦା ଦେଇ ଜଣେ ଜଣେ ମଧ ଯାଉଥିଲେ । କିଏ ଜାଣେ ତାଙ୍କୁ ସମୟ ନଷ୍ଟ କରିବାକୁ ବୋଧେ ଇଛା ନଥିଲା ପରି ଲାଗୁଥାଏ । ଟଙ୍କା ପତ୍ର ହିସାବ ଦେଲା ବେଳେ ଠିକ୍‌ରେ ହିସାବ ଦିଅନ୍ତି ଓ ଅତି କମ୍‌ରେ ପଇସା ଖର୍ଚ୍ଚ କରନ୍ତି । ପାର୍ଟି ଯେଉଁ କାମ ଦେଲେ , ଅନ୍ୟ ସାଥୀ ମାନଙ୍କ ଠାରୁ ଆଗୁଆ ହେଉଥିଲେ । ସତରେ ସାଥୀଙ୍କ ଠାରୁ ଟଙ୍କା ପଇସା ଖର୍ଚ୍ଚ ହିସାବ ଅନ୍ୟ ସାଥୀମାନେ ନିତ୍ୟାନ୍ତ ଶିଖିବା ଉଚିତ୍ । ଯେକୌଣସି ଜିନିଷ ସଜାଇ ରଖିବା ହେଉ କିମ୍ବା ଏସ୍‌ଟିଡି କୋଡ଼ ନମ୍ବର ଯନ୍ତ୍ର ପରି ମନରଖିବା ହେଉ , ସବୁ କିଛି ମୁଣ୍ଡରେ ରଖିପାରୁଥିଲେ । ତାକୁ ଲେଖିବା ମଧ ଦରକାର ପଡୁନଥିଲା । ନିଜ ଘରେ ଖାଇବାକୁ ନଥିଲେ ସୁଦ୍ଧା କେବେ ବି ପାର୍ଟିରେ ଅଭିଯୋଗ କରିନଥିଲେ । ତାଙ୍କ ମାଆ , ସ୍ତ୍ରୀ ଓ ତିନି ସନ୍ତାନଙ୍କୁ ନେଇ ସୁଖେ ଦୁଃଖେ ଘର ଚଳାନ୍ତି ।

ଦିନେ ସାଥୀ ଦାସୁରାମ ରାୟଗଡ଼ା ସହରରେ ଏକ ହୋଟେଲରେ ଖାଇସାରି ପରିଶ୍ରା କରିବାକୁ ଯାଇଥିବା ବେଳେ ଆନ୍ଧ୍ର ପୋଲିସ୍ ପଛରୁ ଆସି ତାଙ୍କୁ କାବୁ କରିନେଇ ତାଙ୍କ ଆଖିରେ ପଟି ବାନ୍ଧି ଆନ୍ଧ୍ରକୁ ନେଇଗଲେ । ସେଠାରେ ଆନ୍ଧ୍ରର ଗ୍ରେହାଉଣ୍ଡସ୍ ଓ ଓଡ଼ିଶା ପୋଲିସ୍ ମିଶି ତାଙ୍କୁ ଦୀର୍ଘ ୧୫ ଦିନ କାଳ ଅକଥନୀୟ ନିର୍ଯ୍ୟାତନା ଦେଲେ । ତାଙ୍କ ମୁହଁରୁ ଶୁଣିଥିବା ସେ ଦିନର କାହାଣୀ ମନେପକେଇଲେ ମୋର ଦେହ ଏବେବି ଶୀତେଇ ଉଠେ । କିଏ ଜାଣେ ଦାସୁ ପଥର ନା କାଠ । ଏତେ ନିର୍ଯ୍ୟାତନା ପାଇ ରକ୍ତାକ୍ତ ହୋଇଯାଉଥିଲେ ମଧ , ପାର୍ଟି କିମ୍ବା ସଂଗଠନ ସମ୍ବନ୍ଧରେ ଗୋଟିଏ ବି କଥା କହିନଥିଲେ । ଧନ୍ୟ ତା'ର ଦେଶପ୍ରେମ ଓ ଗରିବପ୍ରେମ । ସେ ମହାନ ପରୀକ୍ଷାରେ ପାଶ୍ କରି ୧୬ ମାସ କାରାଗାରରେ ଜୀବନ ବିତାଇଥିଲେ ।

କାରାଗାରରେ ବେକାର ନବସି ଗୀତ ନାଚ କରି କାରାଗାରରେ ଥିବା ଅନ୍ୟ ବନ୍ଦୀମାନଙ୍କୁ ମଧ ଏକାଠି କରି ପାର୍ଟି ସଂପର୍କରେ ବୁଝାଉଥିଲେ । ତାଙ୍କୁ ଏତିକି ଯଥେଷ୍ଟ ଲାଗୁନଥିଲା । ତେଣୁ ଜେଲ୍ ଭିତରେ ରହି କୁଇର ଲିପି ଉଭାବନ କରି ଲେଖା ଆରମ୍ଭ କଲେ । ସେ କୁଇ ଲିପି ଏବେ କୁଇ ଲୋକଙ୍କ ମଧରେ ଧିରେ ଧିରେ ପ୍ରସାର ହେଉଛି । ଦାସୁରାମ ତାଙ୍କର କାରା ଜୀବନ ୧୬ ମାସ ବିତାଇ , ପୁଣି ବିପ୍ଲବ କାମ ମଧକୁ ଆସିଥିଲେ । ତାଙ୍କର ତ କିଛି ଭୁଲ୍ ନଥିଲା । କୁଇରେ ପ୍ରକୃତ ଘଟଣାକୁ ନେଇ ଗୀତ ଲେଖିବା ଓ ଗାଇବା ନାଚିବାଟା , ଏ ଗଣତନ୍ତ୍ର କହୁଥିବା ସରକାରକୁ ଭୁଲ ରୂପେ ଦେଖାଗଲା । ରାକ୍ଷସ ପାଟିରୁ ଫେରିବା ପରେ ଦାସୁରାମ ତା'ର ପ୍ରିୟ ଦେଶ , ଜନତାଙ୍କ

ପାଇଁ ଗୀତ ଲେଖା ଆରମ୍ଭ କଲେ । ଏହା ଶୁଣି ଓ ଜାଣି ପୁଣି କମ୍ରେଡ୍ ଦାସୁଙ୍କୁ ରାକ୍ଷସ ସରକାର ଧରିବା ପାଇଁ ଓ ଜୀବନରେ ମାରିବା ପାଇଁ ବହୁତ ଚେଷ୍ଟା କଲା । ପ୍ରାୟ ଚାରି ଥର ପୋଲିସ୍ କୁକୁରମାନଙ୍କ ଠାରୁ ଖସି ଯାଇଥିଲେ ଦାସୁ । ସାଂସ୍କୃତିକ ଦଳକୁ ପରିଚାଳନା କରି , ପାର୍ଟି କାମ କରୁଥିଲେ ସେ । ଦିନେ ଗଜପତି ଜିଲ୍ଲା , ରାଇପାଙ୍ଗା ଅଂଚଳର କିଛି ଗାଁରେ ଝାଡ଼ାବାନ୍ତି ଚାଲିଥିଲା । ଏହା ଦେଖି କମ୍ରେଡ୍ ଓଷଦ ଧରି ଗାଁ ଗାଁରେ ଯାଇ ଲୋକଙ୍କୁ ବୁଝାବୁଝି , ଚିକିତ୍ସା କରୁଥିବା ସମୟରେ , ଅଚାନକ ଭାବେ ତାଙ୍କୁ ମାଡ଼ି ଧରିଲା ସେଇ ମଣିଷଖିଆ ମହାମାରି ରୋଗ । ଲୋକଙ୍କ ସେବା କରୁ କରୁ ନିଜେ ମଧ ଜୀବାଣୁ ଆକ୍ରାନ୍ତ ହୋଇ ଜୀବନକୁ ଶେଷ କରିବାକୁ ପଡ଼ିଲା । ଲୋକଙ୍କ ପାଇଁ କାମ କରୁ କରୁ ପୁଣି ଲୋକଙ୍କ ସାଙ୍ଗରେ ଜୀବନ ଦେବାକୁ ପଡ଼ିଲା । କି ମହାନ ଜୀବନ , କି ମହାନ କାର୍ଯ୍ୟ । ଏପରି ପାର୍ଟି କାର୍ଯ୍ୟ କରି ଜୀବନକୁ ଜଳାଂଜଳି ଦେଉଥିବା ବ୍ୟକ୍ତିଙ୍କ ଠାରୁ ମହାନ , ଏ ଦେଶରେ କିଏ ନାହିଁ । ତାଙ୍କୁ ମୁଁ ମୋର ଲାଲ୍‌ସଲାମ ଜଣାଉଛି । ତାଙ୍କର ତ୍ୟାଗ ପଥର ପଥିକ ହେବାକୁ ଶପଥ ନେଉଛି ।



# ଗୀତର ନାଁ : ଦାସୁରାମ

- ଲେନିନ୍ କୁମାର

"ମୋ ପୁଅ ପୁଲିସ ଗୁଳିରେ ମରିଥିଲେ ଦୁଃଖ ନଥାନ୍ତା , ଝାଡ଼ାବାନ୍ତିରେ ଯାହା ଆଖି ମୁଦିଦେଲା । ସେ ଗରିବ ଲୋକଙ୍କ ଦୁଃଖକଷ୍ଟ ବୁଝୁଥିଲା । ସେଇ ଲାଗି ଲଢ଼େଇର ଗୀତ ଗାଇ ବୁଲୁଥିଲା । ଲୋକଙ୍କ ପାଇଁ କାମ କରୁ କରୁ ଅକାଳରେ ମରିଗଲା । ତା'ର ଅଧୁରା କାମକୁ ବିପ୍ଳବୀମାନେ ପୂରା କରିବେ ବୋଲି ମୁଁ ଚାହୁଁଛି ।"

ଏକଥା କହନ୍ତି ସତୁରୀ ବର୍ଷର ଜଣେ ନିରକ୍ଷରା ଆଦିବାସୀ ମାଆ । ଦିନକ ଆଗରୁ ମରିଚି ସେଇ ଗୋଟେ ବୋଲି ପୁଅ , ଯାହା ପାଇଁ ଖାଲି ସେ ନୁହନ୍ତି ଗାଁ ଗାଁର ଲୋକ କାନ୍ଦୁଛନ୍ତି , ଗ୍ରହଣ କରିପାରୁ ନାହାନ୍ତି ଯାହାର ଏଭଳି ବିୟୋଗକୁ । ଉଶ୍ୱାସ ହେଉଛି ଶାସକ ଶୋଷକ ଗୋଷ୍ଠୀ , 'ଯାହା ପୁଲିସ କରିପାରିଲା ନାହିଁ , ତାହା ଝାଡ଼ାବାନ୍ତି କରି ଦେଖେଇଲା'ବୋଲି ।

ସେଇ କୁଇ ଜନକବି
ଦାସୁରାମ ମାଲେକା
ଗାଁ : ଗୁଡ଼୍‌ରିପଙ୍କା
ପୋଷ୍ଟ : ମାଣ୍ଡିମେରା
ଭାୟା : ଅଡ଼ବା
ଜିଲ୍ଲା : ଗଜପତି ।

ବଣ ପାହାଡ଼ର ଗାଁ । ମୋଟ ୩୬ଟି ପରିବାର , କୁଇ ଆଦିବାସୀ । କାହା ଘରେ ପେଜ ପାଇଁ ଚୂଲି ଆଉ ଜଳୁ ନାହିଁ । ହଇଜାରେ ଆକ୍ରାନ୍ତ ହୋଇ ଗାଁର ଅଧେ ଲୋକ ଏଠୁ ୧୭ କିଲୋମିଟର ଦୂର ବିରିକୋଟ ହସ୍ପତାଲ୍‌ରେ ।

ଗାଁରେ ଚାଳଛପର ବଖୁରିଏ ଘର , ଦାସୁରାମଙ୍କର । କାନ୍ଥରୁ ଅଧେ ଭାଙ୍ଗିପଡ଼ିଚି । ଚିରାଫଟା ସଂସାର ଭିତରୁ ଜଳଜଳ ଦିଶୁଚି ଦୈନ୍ୟତାର ମୁହଁ । ତଳ ମୁହାଁ , ଗୋଟେ ଛିଣ୍ଡା ଖଟିଆରୁ ରସି ଫିଟଉଚି , ଭିଜୁଚି , ଲୁହ ଛଳଛଳ ଆଖିରେ ଦାସୁରାମଙ୍କ ପୁଅ ନସନ୍ । କିଛି କହୁ ନାହିଁ । ରାଇପଙ୍କା ଆଶ୍ରମ ସ୍କୁଲରେ ଷଷ୍ଠ ଶ୍ରେଣୀରେ ପଢୁଛି । ଖବର ପାଇ ଚାଲିଆସିଚି ଗାଁକୁ । କାନ୍ଥକୁ ଆଉଜି ୫ ବର୍ଷର ଝିଅ ସୁଲଚନା ବଲବଲ ଚାହୁଁଚି । ଦାସୁରାମଙ୍କ ସ୍ତ୍ରୀ ବି କାଲିଠୁ ଦେଢ଼ ବର୍ଷର ରୋଗିଣା କନ୍ୟା ସହ ହସ୍ପତାଲ୍‌ରେ ।

ଏ ଭିତରେ ବି ପୁଲିସ ଆସି ରାତିଅଧିଆ କବାଟ ବାଡ଼ଉଚି । କେଉଁଠି ଦାସୁରାମର କବର କୁହ । କବର ଖୋଳି ପରଖିବାକୁ ଚାହୁଁଚି ; ସୁଖବର ମିଛ ନହେଉ ଆଉ । ଲାସ୍ ନିଜେ ନଦେଖିଲେ କେମିତି ରିପୋର୍ଟ କରିବେ ମାଲିକ ମାନଙ୍କୁ ଯେ , ନିଆଁଧରା କବି ନାଇଁ ।

ଗୀତ ହିଁ ହତିଆର ଥିଲା ତାଙ୍କର , ଗରିବ ଦଳିତ ଆଦିବାସୀର ବଂଚିବାର ଲଢେଇରେ । ବଣର ନିଆଁ ପରି ମାଡ଼ିଯାଇଚି ସେଇସବୁ ଗୀତ ଆଜି ରାୟଗଡ଼ା , ଗଜପତି ଜିଲ୍ଲାର କୁଇ ସରା ଗାଁ ଗାଁରେ । ଆହ୍ୱାନ କରୁଚି ଯୁଗଯୁଗର ନିଷ୍ପେସିତ ମଣିଷକୁ ତାରି ଭାଷାରେ ସ୍ୱପ୍ନ ପାଇଁ , ମଣିଷ ଉପରେ ମଣିଷର ଶୋଷଣ ବିରୋଧରେ ଲଢ଼େଇ ପାଇଁ । ସେଇସବୁ ଗୀତ ଭିତରେ ସେ ନିଜେ ହିଁ ଗୀତ ହୋଇଯାଇଛନ୍ତି , ଯାହାର ଲହରକୁ ନା ରୋକିପାରିଚି ନା ରୋକିପାରିବ କେଉଁ ସରକାର ।



ଏକ ଗରିବ ଆଦିବାସୀ ପରିବାରରେ ଦାସୁରାମଙ୍କର ଜନ୍ମ । ପିଲାଦିନୁ ପିତୃହରା । ଘୋର ଅଭାବ କଷଣ ଭିତରେ ସେ ମାତ୍ର ସପ୍ତମ ଶ୍ରେଣୀ ଯାଏଁ ପଢ଼ିଥିଲେ । ବେଶି ପଢ଼ିଥିଲେ ନିଜ ଲୋକଙ୍କ ଜୀବନକୁ ।

କିପରି ନିଜ ଭୂଇଁରେ ହିଁ ଆଜି ଦାସ ହୋଇଯାଏ ଆଦିବାସୀ । କିପରି ଶୋଷଣର କପଟ ବାଟ ଦେଇ ତା'ର ଜମି ଚାଲିଯାଏ ଅଣଆଦିବାସୀ ସାଉକାର ହାତକୁ । ଜମି ବଢ଼େଇ ବଢ଼େଇ ସାଉକାର ଜମିଦାର ବନିଯାଏ । ହାଡ଼ଭଙ୍ଗା ଖଟଣି ସତ୍ୱେ ଆଦିବାସୀକୁ ମିଳେ ନାଇଁ ଗଣ୍ଡେ ଦାନା , ଖଣ୍ଡେ ଜନା , ମିଳେ ନାଇଁ ନ୍ୟାୟ । କିପରି ଶୋଷଣର ପରମ୍ପରା କ୍ରମେ ଜଙ୍ଗଲ ଉପରୁ ଚାଲିଯାଏ ତା'ର ଜନ୍ମଗତ ହକ୍ । ଭିଟାମାଟି ହରାଏ କେଉଁଠି । ତା'ର ଭାଷା ଓ ସଂସ୍କୃତି ଉପରେ ଆକ୍ରମଣ କରି ତା'ର ସର୍ବନିମ୍ନ ମାନବୀୟ ଅସ୍ମିତାକୁ ବି ପୋଛିଦିଏ ଶାସକ ଶ୍ରେଣୀ ।

ଲୋକଙ୍କ ଦୁଃଖଦୁର୍ଦ୍ଦଶା ଦାସୁରାମଙ୍କୁ ଟାଣିନିଏ ବିପ୍ଲବୀ ରାଜନୀତି ଆଡ଼କୁ । ଜମିଦାରମାନଙ୍କ ଜମି ଦଖଲ କରି ଭୂମିହୀନମାନଙ୍କ ମଧରେ ବାଂଟିବା ପାଇଁ , ଗରିବ ଲୋକଙ୍କ ଉପରେ ଶୋଷଣର ଅନ୍ତ ଘଟାଇ ସେମାନଙ୍କ ହାତକୁ କ୍ଷମତା ଆଣିବା ପାଇଁ ।

୧୯୯୫ ସାଲରେ ସେ ଏଠାରେ ଚଳମାନ ସଶସ୍ତ୍ର ଗଣସଂଗ୍ରାମ ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୁଅନ୍ତି । ଏଥିପାଇଁ ରାୟଗଡ଼ା-ଗଜପତି ଅଂଚଳରେ କାମ କରୁଥିବା ଚାଷୀ ମୂଲିଆ ସମିତିରେ ଦାସୁରାମ ଯୋଗ ଦିଅନ୍ତି ଏବଂ ସଂଗଠନର ନେତୃତ୍ୱ ନିଅନ୍ତି । ପିଲାଦିନୁ ଗୀତ ଲେଖି ବାହା ପରବରେ ଗାଉଥିବା ଦାସୁରାମଙ୍କ ଗୀତ କ୍ରମେ

ଶ୍ରେଣୀ ଚେତନାରେ ଶାଣିତ ହୁଏ । ସେ ନିଜ କୁଇ ଭାଷାରେ ଶହ ଶହ ଗୀତ ଲେଖି, ତାର ସ୍ୱର ଦେଇ, ସାଂସ୍କୃତିକ ଦଳ ଗଢ଼ି ଗାଁ ଗଣ୍ଡା ଗାଇ ବୁଲିଲେ । ତାଙ୍କ ଗୀତ ଓ ବ୍ୟକ୍ତିତ୍ୱରେ ଥିଲା ଶୋଷିତ ମଣିଷର ଅସ୍ମିତା ଓ ପ୍ରତିସ୍ପର୍ଦ୍ଧା । ସେ ପାଲଟିଗଲେ ରାୟଗଡ଼ା-ଗଜପତି ଜନତାର ସୁଖଦୁଃଖର ସାଥୀ ଏବଂ ଶାସକ ଶୋଷକ ଶ୍ରେଣୀ ପାଇଁ ଅଭୁତ ଆତଙ୍କ ।

ଦାସୁରାମ କେବେ ବନ୍ଧୁକ ଧରି ନଥିଲେ । ଜନଗଣଙ୍କ ଲଢ଼େଇରେ ସେ ଆପଣେଇଥିଲେ ଜଣେ ସାଂସ୍କୃତିକ ସିପାହୀର ଭୂମିକା । ଜନବାଦୀ କବି ଗାୟକ ସୁବାରାଓ ପାଣିଗ୍ରାହୀଙ୍କ ପଦାଙ୍କରେ ସେହିଭଳି ଦକ୍ଷିଣ ଓଡ଼ିଶାର ଗୁଡ଼ାରି, ନାଇରା, ପଦ୍ମପୁର, ଗୁଣୁପୁର, ରାମନାଗୁଡ଼ା ଆଦି ଅଂଚଳରେ ଚଳମାନ ବାଶଦାର ଜମି ଆନ୍ଦୋଳନରୁ ସୃଷ୍ଟି ହୁଅନ୍ତି କୁଇ ଜନକବି ଦାସୁରାମ ମାଲେକା ।

ପ୍ରଥମେ ଗୁଡ଼ାରି ଅଂଚଳରେ ୩୨ଟି ଗାଁକୁ ନେଇ ଗଢ଼ିଉଠେ ଚାଷୀ ମୂଲିଆ ସମିତି ନେତୃତ୍ୱରେ ଜମି ଆନ୍ଦୋଳନ । ନକ୍ସଲବାଡ଼ି, ଶ୍ରୀକାକୁଲମ୍‌ର ବିପ୍ଳବ ଧାରାରେ ଚାଲେ ଆନ୍ଦୋଳନ । ଭୂମିହୀନ ଆଦିବାସୀ ହାତରେ ହତିଆର ନେଇ ଓହ୍ଲାନ୍ତି ଲଢ଼େଇକୁ । ଜମିଦାର ମାନଙ୍କର ଜମିରୁ ଫସଲ କାଟି ନିଅନ୍ତି । ଜମି ଜବରଦଖଲ କରନ୍ତି । ଆନ୍ଦୋଳନର ନିଆଁ ମାଡ଼ିଯାଏ ଗୁଡ଼ାରି, ପଦ୍ମପୁର, ନାଇରା, ଗୁଣୁପୁର, ରାମନାଗୁଡ଼ା ଅଂଚଳକୁ । ଏଥିରେ ଥରି ଉଠନ୍ତି ଜମିଦାର ଶ୍ରେଣୀ । ଜମିଦାର-ସଂଘ ଗଢନ୍ତି । ଏମାନଙ୍କ ସ୍ୱାର୍ଥ ରକ୍ଷା ଲାଗି ପ୍ଲାଟୁନ୍ ପ୍ଲାଟୁନ୍ ପୁଲିସରେ ଛାଉଣୀ ହୁଏ ଗାଁ ଗାଁ । ସୁରୁ ହୁଏ ଦମନ, ଅତ୍ୟାଚାରର ନୂଆପର୍ବ । ମୂଳରୁ ହିଁ ଚାଷୀ ମୂଲିଆ ସମିତିର ଏହି ଜମି ଆନ୍ଦୋଳନକୁ ସମର୍ଥନ ଦେଇ ଆସିଛି ପିପୁଲସ୍ ୱାର୍ ଦଳ, ଯାହା ଏମ୍‌ସିସି ସହିତ ମିଶ୍ରଣ ପରେ ସିପିଆଇ(ମାଓବାଦୀ) ନାମରେ ଅଧୁନା ପରିଚିତ । ସଶସ୍ତ୍ର ବିପ୍ଳବୀମାନେ ଜମିଦାରମାନଙ୍କ ଉପରେ ଆକ୍ରମଣ ଚଳାନ୍ତି, ଜନଆନ୍ଦୋଳନକୁ ଆଗେଇନେବାକୁ । କେତେ ଜମିଦାର ଆତ୍ମସମର୍ପଣ କରନ୍ତି, ଆଉ କେତେ ଜମି ଛାଡ଼ି ପଳାନ୍ତି । ଜମିଦାର ସଂଘର ନେତାଙ୍କୁ ବି ବିପ୍ଳବୀମାନେ ମୃତ୍ୟୁଦଣ୍ଡ ଦିଅନ୍ତି । ପୁଲିସର ଦମନ ହୁଏ ତୀବ୍ର । ଗାଁ ଗାଁରେ ପୁଲିସ ପଶି ଘର ଭିତରୁ, ହାଟରୁ ବାଟରୁ ବହୁ ନିରୀହ ଲୋକଙ୍କୁ ଉଠାଇ ନିଅନ୍ତି, ନକ୍ସଲ ନାଁରେ ନିର୍ଯ୍ୟାତନା ଦିଅନ୍ତି ଓ ଜେଲ୍ ପଠାନ୍ତି ।

୬ ଫେବୃଆରୀ ୨୦୦୩ । କୁଖ୍ୟାତ ଆନ୍ଧ୍ର ଗ୍ରେହାଉଣ୍ଡସ୍ ପୁଲିସ ଦାସୁରାମଙ୍କୁ ରାୟଗଡ଼ା ସହରରୁ ଅପହରଣ କରିନିଅନ୍ତି । ଗୁପ୍ତ ଶିବିରରେ ରଖି ୧୫ ଦିନ ଧରି ଭୟଙ୍କର ନିର୍ଯ୍ୟାତନା ଦିଅନ୍ତି । ଅନ୍ଧାର ଘରେ ପାଟିରେ ବନ୍ଧୁକର ନଳୀ ପୂରେଇ ଜୀବନରେ ମାରିଦେବାକୁ ଧମକାନ୍ତି ।

ତାଙ୍କୁ ନକ୍ସଲ୍ ପୋଷାକ ପିନ୍ଧାଇ ରାୟଗଡ଼ାର ଜମି ଆନ୍ଦୋଳନ ଅଂଚଳକୁ ଯିବା ପାଇଁ ବାଧ କରାଯାଉଥିଲା । ସମ୍ଭବତଃ ନକ୍ସଲବାଦୀ ନାଁରେ ତାଙ୍କୁ ମିଥ୍ୟା ଗୁଳିବିନିମୟରେ ହତ୍ୟା କରିବାକୁ ଚକ୍ରାନ୍ତ କରିଥିଲା ପୁଲିସ । ପନ୍ଦର ଦିନର ଦାରୁଣ ନିର୍ଯ୍ୟାତନା ପରେ ବି ପୁଲିସ୍ ତାଙ୍କ ମୁହଁରୁ ବିପ୍ଳବୀ ଆନ୍ଦୋଳନକୁ କ୍ଷତି କଲାଭଳି ପଦୁଟିଏ ସୂଚନା ପାଇପାରିନଥିଲା । ସେ ରାଗରେ ଆନ୍ଧ୍ର-ଓଡ଼ିଶା ସରକାର ତାଙ୍କୁ ୧୬ ମାସ ଜେଲରେ ରଖିଲେ ।

ବିପ୍ଳବୀ କବି ଦାସୁରାମଙ୍କ ଗିରଫଦାରୀରେ ସାହିତ୍ୟିକ ଓ ଗଣତନ୍ତ୍ରପ୍ରେମୀ ବୁଦ୍ଧିଜୀବି ମହଲରୁ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଏ । ଶତାଧିକ ପ୍ରବୀଣ ତରୁଣ ସାହିତ୍ୟିକ ଅଭିବ୍ୟକ୍ତିର ସ୍ୱତନ୍ତ୍ରତା ସପକ୍ଷରେ ତାଙ୍କର ମୁକ୍ତି ପାଇଁ ସ୍ୱର ଉତୋଳନ କରିଥିଲେ ।

ସମାଜର ସବୁଠୁ ଗରିବ , ସବୁଠୁ ବଂଚିତ ଶ୍ରେଣୀରୁ ଆସିଥିବା ସ୍ୱଳ୍ପ ଶିକ୍ଷିତ ଏଇ ଆଦିବାସୀ ଯୁବକ ଭିତରେ ନିଜ ଲୋକଙ୍କ ପାଇଁ , ଲୋକଭାଷା ପାଇଁ ଯେଉଁ ଅପୂରନ୍ତ ପ୍ରେମ ଥିଲା , ଆର୍-ଉଦୟଗିରୀ ଜେଲ୍‌ରେ ବନ୍ଦୀ ଜୀବନ ବିତାଇବା ସମୟରେ ତା'ର ଉଚ୍ଛାଙ୍ଗ ପରିପ୍ରକାଶ ଘଟିଥିଲା କୁଇ ଲିପି ସୃଷ୍ଟିରେ ।

ଜେଲ୍‌ରେ ଥିଲେ ବହୁ କୁଇ ଆଦିବାସୀ , ଜମି ଆନ୍ଦୋଳନର ସଂଗ୍ରାମୀ ସାଥୀ । ଦିନ ଦିନ ସେମାନଙ୍କ ସହ ଏ ନେଇ ତାଙ୍କର ଆଲୋଚନା ଚାଲିଲା । କାଗଜ କଲମର ଅଭାବ । ଜେଲ୍ କାନ୍ଥରେ ଅଙ୍ଗାରରେ ଦିନ ଦିନ ଗାରେଇ ଗାରେଇ ଚାଲିଲା ଗବେଷଣା । ସୃଷ୍ଟି ହେଲା କୁଇ ଲିପି । କୁଇ ଆଦିବାସୀଙ୍କ ଏକ ପରିଚୟ ।

୨୪ ଜୁନ ୨୦୦୪ରେ ଦାସୁରାମଙ୍କ ନାମରେ ପୁଲିସର ସମସ୍ତ ଅଭିଯୋଗ ପାର୍ବତୀପୁରମ୍ କୋର୍ଟରେ ମିଥ୍ୟା ପ୍ରମାଣିତ ହୁଏ । ସେ ନିର୍ଦ୍ଦୋଷରେ ଖଲାସ୍ ହୁଅନ୍ତି । ଭୁବନେଶ୍ୱରର ଏକଭରପୁର ସାମ୍ବାଦିକ ସମ୍ମିଳନୀରେ ସେ ପ୍ରକାଶ କରନ୍ତି ତାଙ୍କ ୧୬ ମାସ ବନ୍ଦୀ ଜୀବନର କାହାଣୀ ; ନକ୍ସଲ୍ ନାଁରେ ନିଜ ଅଂଚଳର , ଗରିବ ଆଦିବାସୀଙ୍କ ପ୍ରତି ହେଉଥିବା ଶୋଷଣ ଦମନର କାହାଣୀ । ହଲ୍ ଭର୍ତି ସାମ୍ବାଦିକ , କ୍ୟାମେରାମ୍ୟାନ୍ ଓ ଶ୍ରୋତାଙ୍କ ଗହଣରେ ସେ ଯେଭଳି ଅବିରାମ କହି ଚାଲିଥିଲେ ଗୀତ ଗାଇ , ଝଂଜଣୀ ବଜେଇ , ସେଥିରେ ଅଭିଭୂତ ହୋଇଯାଇଥିଲେ ସଭିଏଁ । ପରଦିନ ରାଜ୍ୟର ସମସ୍ତ ଖବରକାଗଜର ପ୍ରଥମ ପୃଷ୍ଠା ମଣ୍ଡନ କରନ୍ତି ବିପ୍ଳବୀ ଦାସୁରାମ ମାଲେକା । ସମସ୍ତ ଟିଭି ଚ୍ୟାନେଲ୍‌ରେ ପ୍ରସାରିତ ହୁଏ ତାଙ୍କ ମାର୍ମିକ ବକ୍ତବ୍ୟ ।

ଦେଖାଯାଏ , ରାଷ୍ଟ୍ରଶକ୍ତିର ନିର୍ଯ୍ୟାତନା ଅଙ୍ଗେ ନିଭେଇବା ପରେ କିଛି ବିପ୍ଳବୀ ତାଙ୍କର ପରବର୍ତୀ ଜୀବନରେ ନିଷ୍କ୍ରୀୟ ରହିଯାଇଛନ୍ତି । ଅବା ପ୍ରତିବିପ୍ଳବର ଶିବିରରେ

ଯାଇ ପହଂଚିଛନ୍ତି । କିନ୍ତୁ ଦାସୁରାମ ଥିଲେ ବ୍ୟତିକ୍ରମ । ବିପ୍ଳବୀ ରାଜନୀତି ପ୍ରତି ତାଙ୍କର ଆକର୍ଷଣ ରୋମାଂଟିକ୍ ନଥିଲା । ସେଥିରେ ଥିଲା ନିଜସ୍ୱ ବାସ୍ତବତାର ସ୍ୱର । ରାଷ୍ଟ୍ରସଂତ୍ରାସ ଅବା ପରିବାରର ଦାରୁଣ ଆର୍ଥିକ ସ୍ଥିତି ତାଙ୍କର ମନୋବଳ ଭାଙ୍ଗି ପାରିନଥିଲା । ଜେଲ୍‌ରୁ ମୁକୁଳିବା ପରେ ସେ ବିପ୍ଳବୀ ଆନ୍ଦୋଳନ ପାଇଁ ଅଧିକରୁ ଅଧିକ କାମ କରି ଚାଲିଲେ ।

କୁଇ ଲିପି ନେଇ ସେ ପହଂଚିଲେ ଲୋକଙ୍କ ଗହଣକୁ । ସେମାନଙ୍କ ହୃଦୟରେ ଜଗେଇଲେ ସ୍ୱାଭିମାନର ଚେତନା । ନିଜ ଗୀତସଂଗୀତ ମାଧମରେ ଶୋଷଣ ଦମନ ବିରୋଧରେ ଜଗେଇଲେ ସଂଗ୍ରାମର ନିଆଁ । ସଭା ସମାବେଶରେ ସଂଗ୍ରାମୀ ଜନତାର ପ୍ରତିନିଧି ରୂପେ ତାଙ୍କୁ ଦେଖିବାକୁ ମିଳିଲା । ତାଙ୍କର ବିଚାରଧାରା ଥିଲା ମାର୍କ୍ସବାଦ-ଲେନିନ୍‌ବାଦ-ମାଓବାଦ । ତାଙ୍କଠି ତତ୍ୱବାଗୀଶର ବାଗାଡମ୍ବର ନଥିଲା , ସ୍ୱଭାବ ସୁଲଭ ସରଳତାରେ ସେ ଛୁଇଁ ପାରୁଥିଲେ ଜନତାର ହୃଦୟକୁ ।

୧୬ ସେପ୍ଟେମ୍ବର ୨୦୦୪ରେ ଶୋଷଣ ଦମନ ବିରୁଦ୍ଧରେ ଦଳିତ ଆଦିବାସୀ ଜନତାର ଦାବି ନେଇ ଭୁବନେଶ୍ୱରରେ ଅନୁଷ୍ଠିତ ବହୁ ଚର୍ଚ୍ଚିତ ଜନଗର୍ଜନ ସମାବେଶ ହେଉ ବା ୨୦ ଜାନୁଆରୀ ୨୦୦୬ରେ କଳିଙ୍ଗନଗର ବିସ୍ଥାପନ ବିରୋଧୀ ଜନଆନ୍ଦୋଳନର ସମର୍ଥନରେ ଜନ ସଂଘର୍ଷ ସମାବେଶ ହେଉ , ସବୁଠି ସେ ପ୍ରମାଣିତ କରିଛନ୍ତି ନିଜକୁ । ନିଜର ସାଂସ୍କୃତିକ ଦଳ ସହ ବିପ୍ଳବୀ ସଙ୍ଗୀତ ପରିବେଷଣରେ ସେ ଥିଲେ ନିଆରା । ସମକାଳୀନ ମହାନ ସାଂସ୍କୃତିକ ଯୋଦ୍ଧା ଗଦ୍ଦରଙ୍କ ପରି ନାଚଗୀତରେ ସେ ଆପଣେଇଥିଲେ ଆକର୍ଷକ ଜନବାଦୀ ଶୈଳୀ । ଲାଲ୍ ବାନିଆନ୍ , ଶାଗୁଆ ଲୁଙ୍ଗି ପିନ୍ଧି ଆଉ କାନରେ ପିକା ଖୋସି , ହାତରେ ଦାଆ ହାତୁଡ଼ି ଅଙ୍କା ଗୋଟେ ଲାଲ୍ ରୁମାଲ୍ ହଲେଇ ତାଙ୍କର ନୃତ୍ୟାଭିନୟରେ ଫୁଟି ଉଠୁଥିଲା ତାଙ୍କର ଦୃଢ଼ ଆତ୍ମବିଶ୍ୱାସ ।

କବି ଦାସୁରାମ କୋର୍ଟରୁ ନିର୍ଦ୍ଦୋଷରେ ଖଲାସ ହେବା ପରେ ବି ତାଙ୍କ ଉପରେ , ପରିବାରବର୍ଗଙ୍କ ଉପରେ ପୁଲିସିଆ ନିର୍ଯ୍ୟାତନା କମି ନଥିଲା । ସେ କେବେ ବନ୍ଧୁକ ଧରିନଥିଲେ । ଅସ୍ତ୍ର କହିଲେ ଥିଲା ତାଙ୍କର ଗୀତ । ତାଙ୍କ ଜନପ୍ରିୟତାରେ ଆତଙ୍କିତ ହୋଇ ପଡ଼ିଥିଲେ ଶାସକ ଶ୍ରେଣୀ । ତାଙ୍କ ନାଁରେ ସରକାର ଗୋଟେ ପରେ ଗୋଟେ ମକଦ୍ଦମା ଯୋଡ଼ି ଚାଲିଲେ । ଦାସୁରାମ ଭୂମିଗତ ହେବାକୁ କ୍ରମେ ବାଧ ହେଲେ । ତାଙ୍କ ମୁଣ୍ଡ ପାଇଁ ସରକାରଙ୍କ ଲକ୍ଷେ ଟଙ୍କା ଘୋଷଣା ପୋଲିସ୍ ପ୍ରଚାର କରେ । ୮ ଜୁନ୍ ୨୦୦୬ ରେ ଓଡ଼ିଶା ସରକାର ରାଷ୍ଟ୍ରଦ୍ରୋହ ଆରୋପରେ ସିପିଆଇ(ମାଓବାଦୀ) ଦଳ ସମେତ ଚାଷୀ ମୂଲିଆ ସମିତି , କୁଇ ଲାୱ୍ୱେଙ୍ଗା ସଂଘ , ଦମନ ପ୍ରତିରୋଧ ମଂଚ , ଜନ ନାଟ୍ୟ ମଣ୍ଡଳୀ , ବାଲ୍ ସଂଘମ୍ , କ୍ରାନ୍ତିକାରୀ ଜନବାଦୀ ମୋର୍ଚ୍ଚା , କ୍ରାନ୍ତିକାରୀ କିଶାନ ସଭା ଭଳି ସାତଟି ଗଣ ସଂଗଠନକୁ ନିଷିଦ୍ଧ ଘୋଷଣା କଲେ ।

ଭୂମିଗତ ଜୀବନରେ ତାଙ୍କୁ ହତ୍ୟା କରିବାକୁ ପୁଲିସ ଦୁଇ ଦୁଇ ଥର ଚେଷ୍ଟା କରିଥିଲେ ମଧ , ତାଙ୍କ ପ୍ରତ୍ୟୁତ୍ପନ୍ନମତିତା ଯୋଗୁଁ ସେ ବର୍ତି ଯାଇଥିଲେ । ପ୍ରକାଶିତ ସମ୍ବାଦରୁ ଜଣାପଡ଼େ , ୨୪ ସେପ୍ଟେମ୍ବର ୨୦୦୬ରେ ଦାସୁରାମଙ୍କ ସାଂସ୍କୃତିକ ଦଳ ଗିଲାକୁତା ଗାଁରେ ନାଚଗୀତ ସହିତ କ୍ରାନ୍ତି ଓ ଲାଲ୍ ସଲାମ୍ ଭଳି ଦୁଇଟି ଭାରତୀୟ ସେନସର୍ ବୋର୍ଡ ସ୍ୱୀକୃତ ଚଳଚିତ୍ର ପ୍ରଦର୍ଶନ କରୁଥିଲେ । ଗାଁକୁ ସି.ଆର୍.ପି.ଏଫ୍ ପହଁଚି ୬ ଜଣ ସାଂସ୍କୃତିକ କର୍ମୀଙ୍କ ସମେତ ଜଣେ ଗ୍ରାମବାସୀଙ୍କୁ ଗିରଫ୍ କରି ରାଷ୍ଟ୍ରଦ୍ରୋହ ଭଳି ସଙ୍ଗୀନ୍ ମାମଲାରେ ସଂପୃକ୍ତ କରାଇ ଜେଲ୍ ପଠାଇଦିଅନ୍ତି । ଦାସୁରାମଙ୍କୁ ସାରା ଗାଁ ସେମାନେ ପାଗଳ ପରି ତଲାସି ଥିଲେ ବି , ପୁଲିସ୍ ଆଖିରେ ଧୂଳି ଦେଇ ସେ କୌଶଳ କ୍ରମେ ଖସିଯିବାରେ ସମର୍ଥ ହୋଇଥିଲେ ।

ସବୁଥର ଭଳି ଏହି ଘଟଣାରେ ବି ଓଡ଼ିଶାର ଗଣ( ? )ମାଧମ ଗୁଡ଼ିକ ସବୁ , ସରକାରଙ୍କ ସହ ସ୍ୱର ମିଳାଇ ତାଙ୍କ ଭଳି ଜଣେ ବିପ୍ଳବୀ କବି କଳାକାରଙ୍କୁ ଦୁର୍ଦ୍ଦାନ୍ତ ଅପରାଧୀ ଭାବରେ ଚିତ୍ରଣ କରିବାକୁ ସାମାନ୍ୟତମ କୁଂଠା ପ୍ରକାଶ କରିନାହାନ୍ତି । ଏଥିରେ ବି ବିସ୍ମୟ ହେବାର ନାହିଁ । ସେମାନେ କାହିଁକି ବା କରିବେ ନାଇଁ । ଓଡ଼ିଶାର ଦୁର୍ଭାଗ୍ୟକୁ ପ୍ରାୟ ସମସ୍ତ ଗଣମାଧମ ଯେତେବେଳେ ଶାସକ ଶ୍ରେଣୀ ଦ୍ୱାରା ପ୍ରାୟୋଜିତ । ଏପରିକି ତାଙ୍କ ମୃତ୍ୟୁରେ ଏହିଭଳି ଏକ ଖବରକାଗଜ ଚିଂନ୍ତିତ ହୋଇଉଠେ - "ଦାସୁରାମଙ୍କ ମୃତ୍ୟୁ ପରେ ଗଜପତି ପୁଲିସ ଶାନ୍ତିରେ ନିଶ୍ୱାସ ମାରୁଥିବା ବେଳେ , ଏଠାରେ ଏକ ପ୍ରଶ୍ନ ଉଠୁଚି - ଦାସୁରାମଙ୍କ ମୁଣ୍ଡ ପାଇଁ ଘୋଷଣା କରାଯାଇଥିବା ଲକ୍ଷେ ଟଙ୍କା ପାଇବ କିଏ ? ଗଜପତିରେ ବ୍ୟାପିଥିବା ଝାଡ଼ାବାନ୍ତି ? ନା ଦୁଇ ମନ୍ତ୍ରୀଙ୍କ ଗସ୍ତ ପରେ ଅଂଚଳ ଖାଲି କରି ଶାନ୍ତିରେ ନିଃଶ୍ୱାସ ମାରୁଥିବା ଜିଲ୍ଲା ପ୍ରଶାସନ ?"



ପ୍ରତିଥର ଭୁବନେଶ୍ୱରରେ ଭେଟ ହେଲେ ଦାସୁରାମ କହୁଥିଲେ - ଲେଖକ ବନ୍ଧୁଙ୍କ ମେଳରେ ଥରୁଟିଏ ତାଙ୍କ ଗାଁ ବୁଲି ଆସିବାକୁ , ଲୋକେ କେଉଁଭଳି ଦୁଃଖକଷ୍ଟରେ ଚଳୁଛନ୍ତି , ଲଢୁଛନ୍ତି ନିଜ ଆଖିରେ ଦେଖିବାକୁ । ତାଙ୍କର ସଂଗଠନ ନିଷିଦ୍ଧ ହେବା ପରଠୁ ତାଙ୍କୁ ଆଉ ଭେଟିବାର ସୁଯୋଗ ନଥିଲା । କେବେ ଆସିନାଇଁ ତାଙ୍କ ଗାଁ , ଆସିଲି ଯେ ତାଙ୍କର ଅକାଳ ବିୟୋଗ ଖବର ପାଇ । ସେଥିପାଇଁ ନିଜକୁ ଧିକ୍କାରୁଥିଲି । ତାଙ୍କ ବିଷୟରେ ଆଉ କିଛି କାହାକୁ ପଚାରିବାକୁ ବି ମୋର ସାହସ କୁଳଉନଥିଲା । ଦାସୁରାମଙ୍କ ମାଆ କାନ୍ଦି କାନ୍ଦି କହୁଥିଲେ -

"ତା ବଡ଼ବାପା ଘରକୁ ଟଳି ଟଳି ଗଲା ଯେ , ପିଣ୍ଡାରେ ପଡ଼ିଗଲା ଆଉ ପାଟି

ଖୋଲିଲା ନାହିଁ । ଗାଁଲୋକ ଗାଲିମେରା ଯାଇ ଓଷଦ ଆଣିଲେ । ସେଇ ରାତିରେ ଯୋଶେଫ୍ ଚାଲିଗଲା । ରାତିରେ ଆହୁରି ଦାସୁକୁ ଝାଡ଼ାବାନ୍ତି ହେଲା । ତାକୁ ପୁଲିସ ଆଉ ଥରେ ବାନ୍ଧିନେବ ବୋଲି ହସ୍ପତାଲ ନେଲୁ ନାହିଁ । ଝୋ ଝୋ ବର୍ଷାରେ ତାପାଇଁ ଗାଁଲୋକ ଡାକ୍ତର ଆଣି ଗଲେ ଯେ , ସକାଳକୁ ସେମାନେ ଫେରିଲା ବେଳକୁ ଦାସୁ ଆଉ ଆଖି ଖୋଲି ନାହିଁ ।"

ଗୁଡରିପଙ୍କା ଭଳି ଗାଁ ଗୁଡ଼ିକରେ ଅନାହାର ଅର୍ଦ୍ଧାହାର , ଯେଉଁଠି ବେମାର ପଡ଼ିଲେ ଓଷଦ ଟିକେ ପାଇବା ସ୍ୱପ୍ନ , ପ୍ରତି ବର୍ଷ ମ୍ୟାଲେରିଆ ହଇଜାରେ ଶହ ଶହ ଗରିବ ଆଦିବାସୀ ପ୍ରାଣ ହରାଇବା ନୂଆକଥା ନୁହେଁ । ସରକାରଙ୍କ ସ୍ୱାସ୍ଥ୍ୟସେବାକୁ ଉପହାସ କରି ଏବର୍ଷ କାଶୀପୁର , ଦଶମନ୍ତପୁର , ମୋହନା , ଅଡ଼ବା , ଥୁଆମୂଳ ରାମପୁର ଆଦି ବ୍ଲକ୍‌ରେ ସାଧାରଣ ଚିକିତ୍ସା ଅଭାବରୁ ଶତାଧିକ ଲୋକ ହଇଜାରେ ଚାଲିଗଲେ । ଗଜପତି ଜିଲ୍ଲାରେ ହିଁ ହଇଜା ମୃତ୍ୟୁ ସଂଖ୍ୟା ୫୦ରୁ ଅଧିକ କୁହାଯାଉଥିବା ବେଳେ ସରକାରୀ ସୂତ୍ରରେ ଏହା ମାତ୍ର ୨୦ ଏବଂ ପରିସ୍ଥିତି ସଂପୂର୍ଣ୍ଣ ନିୟନ୍ତ୍ରଣାଧୀନ ।

ଦାସୁରାମ ନିଜ ଅଂଚଳର ହଇଜା ସଂକ୍ରମିତ ପାରିମା , ଗୁଜିପଦର , ଗୁଡ଼ିପଦର ଆଦି ଗାଁରେ ସାଂସ୍କୃତିକ କର୍ମୀଙ୍କ ସହ ଆକ୍ରାନ୍ତ ଲୋକଙ୍କ ସେବାରେ ବୁଲୁଥିଲେ । ନିଜ ଗାଁରେ ବି ଜନ ଆନ୍ଦୋଳନର ସାଥୀ ତଥା ସାଂସ୍କୃତିକ କର୍ମୀ ଯୋଶେଫ୍ ମହାମାରୀରେ ଆକ୍ରାନ୍ତ ଖବର ପାଇ ଗୁଡ୍‌ରିପଙ୍କା ଆସିଥିଲେ । ଆକ୍ରାନ୍ତ ଲୋକଙ୍କ ସେବା କରିବା ଅବସରରେ ହିଁ ଏହି ଦରଦୀ ସଂଗ୍ରାମୀ ମଣିଷଟି ନିଜେ ସେଇ ମହାମାରୀର ଶିକାର ହୋଇ, ମାତ୍ର ୩୨ ବର୍ଷରେ ଚାଲିଗଲେ ।

ପାଖାପାଖି ଦୁଇଟି କବର ; ଯୋଶେଫ୍ ଆଉ ଦାସୁରାମଙ୍କର । କବରରେ ଫୁଲ ଦେଇ ଫେରିବା ବାଟରେ ବିରିକୋଟ ହସ୍ପତାଲରୁ ଚାଲି ଚାଲି ଫେରୁଥାନ୍ତି ଲୋକଙ୍କ ମେଳରେ ଦାସୁରାମଙ୍କ ବିଧବା ପତ୍ନୀ ଗୋହିଙ୍ଗାଲୁ ମାଲେକା । ଆମ ସାଙ୍ଗରେ ଆସିଥିବା କେହି ଜଣେ ଦୂରରୁ ଚିହ୍ନେଇ ଦେଇଥିଲେ । କାଖରେ ଓହଳିଥାଏ ଦେଢ଼ ବର୍ଷର ରୋଗିଣା ଝିଅ । ମୁହଁରେ ଗଭୀର ବିଷାଦର ଛାଇ । ଏଇ ମହିଳା ଜଣକ ହିଁ ମୁଣ୍ଡେଇ ଆସିଛନ୍ତି ସମୁଦାୟ ପରିବାରର ଦାୟିତ୍ୱ । ଦାସୁରାମ ତ ଘରେ ରହୁନଥିଲେ । ତେଣୁ ତାଙ୍କୁ ହିଁ କରିବାକୁ ପଡୁଥିଲା ଚାଷବାସ । ଦାସୁରାମଙ୍କୁ ସେ ଛାଡ଼ି ଦେଇଥିଲେ ବୁଝିବାକୁ ତାଙ୍କ ପରି ଦୁନିଆ ଲୋକଙ୍କ କଷ୍ଟ ।

ମହାମାରୀ ଆକ୍ରାନ୍ତ ଲୋକଙ୍କ ସେବା କରୁ କରୁ ଠିକ୍ ଯେଉଁଭଳି ସେଇ ମହାମାରୀର ଶିକାର ହୋଇ ଅକାଳରେ ମୃତ୍ୟୁବରଣ କରିଥିଲେ ଓଡ଼ିଶାରେ ଜନବାଦୀ ସାହିତ୍ୟିକ ତଥା

କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରାଣ ପ୍ରତିଷ୍ଠାତା ଭଗବତୀ ଚରଣ ପାଣିଗ୍ରାହୀ , ତାହାର ପୁନରାବୃତି ଘଟିଲା କୁଇ ଜନକବି ତଥା ଚାଷୀ ମୂଲିଆ ସମିତିର ନେତା ଦାସୁରାମ ମାଲେକାଙ୍କ ଠାରେ ।

ଦାସୁରାମ ଚାଲିଗଲେ ଅକାଳରେ , ମାତ୍ର ୩୨ ବର୍ଷ ବୟସରେ । ହେଲେ ତାଙ୍କ ଗୀତର ମୃତ୍ୟୁ ନାହିଁ । ଗୀତର ନାଁ ହିଁ ଦାସୁରାମ ମାଲେକା ।

*(ସୌଜନ୍ୟ - ନିସାନ , ଅକ୍ଟୋବର-ଡିସେମ୍ବର ୨୦୦୭)*



# ସାଥି , ସମର୍ଥକ ଓ ଶୁଭେଚ୍ଛୁ ମାନେ ଯାହା କହନ୍ତି :

ତା' ଗୀତରେ ଆମେସବୁ ବୁଝୁଥିଲୁ ସମାଜର ଅବସ୍ଥାକୁ । ତା'ର ରାଜନୀତି ଧନୀ ଗରିବ ସମାନ ହେବା ପାଇଁ , ଜାତି ଭେଦ ନରହିବା ପାଇଁ , ଠକାମି ଭଣ୍ଡାମି ନରଖିବା ପାଇଁ । ଦାସୁର କଥା କହିଲେ ସରିବ ନାଇଁ । କାହିଁ ଗୁଡ୍‌ରିପଙ୍କାରୁ ଯାଇ ଆସି ଏଇ ନଳାଘାଟରେ ତିନି କ୍ଲାସ ଯାଏଁ ସେ ପଢୁଥିଲା । ପିଲାଦିନୁ ବାପା ମରିଗଲା । ଘରେ ଖାଇବାକୁ ନଥିଲା । ଏମିତିରେ ବି ରାଇପଙ୍କାରେ ସେ ସାତ କ୍ଲାସ ଯାଏଁ ପଢ଼ିଥିଲା । ଆମ କୁଇ ଲୋକଙ୍କର କାହିଁକି କୁଇ ଲିପି ରହିବନି , ଏଇ ଚିନ୍ତା ଥିଲା ତା'ର । ଜମି ଆନ୍ଦୋଳନରେ ପିତର , ଶରତ , ପ୍ରଫୁଲ୍ଲ , ନୂତୁ ଆମେ ସବୁ ଜେଲ୍ ରେ ଥିବାବେଳେ , ସେ ଆମ ସହ ମିଶି ସେଇଠି କୁଇ ଅରା ବାହାର କରିଥିଲା । ପୁଲିସ୍ ଆଖିରେ ସେ ନକ୍ସଲ ନେତା ହୋଇପାରେ , ସେ ଲୋକଙ୍କର ସୁଖ ଦୁଃଖର ସାଥୀ ଥିଲା । ପିଲାଠୁ ବୁଢ଼ା ଯାଏଁ ସମସ୍ତେ ତାକୁ ମାନୁଥିଲେ । ସେ ତାର ମାଆକୁ , ସ୍ତ୍ରୀକୁ କହୁଥିଲା - ଘରେ ସିନା ତମେ ମୋର , ଘର ବାହାରେ ସମସ୍ତେ ମୋର ନିଜର । ଦାସୁର ଗୀତ ନାଚ , ରାଜନୀତିକୁ ଲୋକେ ସବୁଦିନ ମନେ ପକେଇବେ । ପରଦିନ ସେ ମରିଗଲା ଝାଡ଼ାବାନ୍ତିରେ । ଗଲା ରାତିରେ ସ୍ୱପ୍ନରେ ସେ ଆସିଲା , ଗୀତରେ ଡାକୁଥିଲା । ନିଦ ଭାଙ୍ଗିଗଲାରୁ ମୁଁ ଆଉ ଶୋଇ ନାଇଁ , କାନ୍ଦିଲି । କେତେ ଥର ପୁଲିସ ହାତରୁ ସେ ଖସି ଆସିଥିଲା । ଝାଡ଼ା ବାନ୍ତିରେ ଲୋକଙ୍କ ସେବାରେ ନିଜେ ମରିଗଲା । ତା' ପରି ମଣିଷ ଦୁନିଆଁରେ ଏତେ ମିଳିବେ ନାଇଁ ।

*- ଜାକବ ମାଝୀ , ଜନ ଆନ୍ଦୋଳନର ସାଥୀ*

ବିପ୍ଳବୀ କବି ଦାସୁରାମ ମାଲେକାଙ୍କ ଅକାଳ ବିୟୋଗରେ ମୁଁ ମର୍ମାହତ । କିଛିବର୍ଷ ତଳେ ଭୁବନେଶ୍ୱରର ଲୋହିଆ ଏକାଡେମୀଠାରେ ତାଙ୍କୁ ଶୁଣିବାର ସୁଯୋଗ ମିଳିଥିଲା । ସେଠାରେ ସେ କୁଇ ଭାଷାରେ ରଚିତ ତାଙ୍କର କେତୋଟି କବିତା ଖଂଜଣି ବଜାଇ ଗାନ କରିଥିଲେ । ଭାଷା ବୁଝି ହେଉନଥିଲେ ବି ତାଙ୍କର ଦୃପ୍ତ ଉଚ୍ଚାରଣରେ ଥିବା ଆତ୍ମବିଶ୍ୱାସ ମତେ ଅଭିଭୂତ କରିଥିଲା । ଓଡ଼ିଆରେ ଅନୂଦିତ ତାଙ୍କର କେତୋଟି ଗୀତିକବିତା ପତ୍ର ପତ୍ରିକାରୁ ପଢ଼ିଛି । ସେଥିରୁ ବୁଝିହୁଏ ତାଙ୍କ ଶ୍ରେଣୀ ସଚେତନତା ଓ ସଂଗ୍ରାମୀ ଆଭିମୁଖ୍ୟ କେତେ ଶକ୍ତିଶାଳୀ ଥିଲା । ଆମେ ଯେଉଁମାନେ ସମାଜ ବାସ୍ତବତାକୁ ଆଧାର କରି କବିତା

ରଚନାର ପ୍ରୟାସ କରୁଛୁ , ଆମ ଭିତରେ ଅନେକ ଦ୍ୱନ୍ଦ ରହିଛି । କାରଣ , ଆମେ ଯେଉଁ ଭୂମି ଉପରେ ଅଛୁ ଓ ଯେଉଁ କଥା କବିତାରେ କହିବାକୁ ଚାହୁଁଛୁ , ତା' ଭିତରେ ଅନେକ ବ୍ୟବଧାନ ରହିଯାଇଛି । କବି ଦାସୁରାମଙ୍କ ପାଇଁ କିନ୍ତୁ ଏପରି କୌଣସି ଦ୍ୱନ୍ଦ ନଥିଲା । ଯେଉଁ ଭୂମି ଉପରେ ସେ ଠିଆ ହୋଇଥିଲେ , ସେହି ଭୂମିର ନିଷ୍ପେସିତ ମଣିଷଙ୍କ ସ୍ୱପ୍ନ ଓ ସଂଘର୍ଷ ସହିତ ସାମିଲ୍ ହୋଇଥିଲେ । ନିଜ ଗୀତରେ ତାକୁ ରୂପ ଦେଇଥିଲେ । ଆଜି ଯଦି ଜନବାଦୀ କଳା ସାହିତ୍ୟର ଗତି ପ୍ରକୃତିକୁ ବୁଝିବାକୁ ଚେଷ୍ଟା କରାଯାଏ , ତେବେ କବି ଦାସୁରାମଙ୍କ ଜୀବନ ସଂଗ୍ରାମ ଓ ସୃଜନୀ ପ୍ରତିଭାର ତାତ୍ପର୍ଯ୍ୟକୁ ବୁଝିବାକୁ ହେବ । ସେଥିଲେ ଜଣେ ପ୍ରକୃତରେ ଜନବାଦୀ ବିପ୍ଳବୀ କବି । ତାଙ୍କ ଅବର୍ତମାନରେ ବି ଅଗଣିତ ବଂଚିତ ମଣିଷଙ୍କ କଂଠରେ ତାଙ୍କର ରଚନା ସବୁ ବଂଚି ରହିବ ।

*- ଆଶୁତୋଷ ପରିଡ଼ା , କବି , ବୈଜ୍ଞାନିକ*

*ସୌଜନ୍ୟ - ନିସାନ*

ଦାସୁରାମ ମାଲେକା ଜଣେ ଆଦିବାସୀ , ଅଳ୍ପ ଶିକ୍ଷିତ ଯୁବକ ହେଲେବି ଜନ ଦରଦୀ । ନିଜ ଭାଷା , ଶ୍ରେଣୀ ସଂପର୍କରେ ସେ ସ୍ୱାଭିମାନୀ । ସେ କ୍ରମରେ ସ୍ୱଜନଙ୍କ ପ୍ରତି ଶୋଷଣ , ଅତ୍ୟାଚାରକୁ ବିରୋଧ କରି ଶିଖିଥିଲେ , ସେଥିପାଇଁ ସେ ବାଛି ନେଇଥିଲେ ଗୀତର ହତିଆର ।

ଅବସ୍ଥାର ପରିବର୍ତନ ଦରକାର । ଦଳିତ , ଆଦିବାସୀ , ଜନଗଣଙ୍କ ସପକ୍ଷରେ । ତାଙ୍କର ମୃତ୍ୟୁ ସମ୍ପୂର୍ଣ୍ଣ ଅସ୍ୱାଭାବିକ ଏବଂ ସେଥିପାଇଁ ସରକାରଙ୍କ ନିଷେଧାଜ୍ଞା ମୁଖ୍ୟତଃ ଦାୟୀ । ତାଙ୍କର ମୃତ୍ୟୁ ଜନଆନ୍ଦୋଳନ ପକ୍ଷରେ ଏକ ବିଶେଷ କ୍ଷତି । ଦାସୁରାମଙ୍କ ପ୍ରତି ମୁଁ ନିଜର ଅଭିବାଦନ ଜଣାଉଛି ।

*- ଗଣନାଥ ପାତ୍ର , ସିପିଆଇ(ଏମ୍.ଏଲ୍) (କାନୁ-ରାମଚନ୍ଦ୍ରନ୍) , କେନ୍ଦ୍ରୀୟ କମିଟି ସଦସ୍ୟ*

ଗତ ସେପ୍ଟେମ୍ବର ୧୦ ତାରିଖରେ ହଇଜାରେ ଦକ୍ଷିଣ ଓଡ଼ିଶାର ବିପ୍ଳବୀ କୁଇ କବି ଦାସୁରାମଙ୍କ ଅକାଳ ବିୟୋଗ ସଂବାଦ ଶୁଣି କେବଳ ମୁଁ ନୁହେଁ , ଯେଉଁମାନଙ୍କୁ ଶୁଣେଇଛି , ହତବାକ୍ ହୋଇଯାଇଛନ୍ତି । ୧୨ ତାରିଖ ଦିନ ମୁଁ ତାଙ୍କ ଗାଁ ଗୁଡ଼ରିପଙ୍କା ଯାଇ ତାଙ୍କ କବରରେ ଫୁଲ ଦେଇ ଫେରିଛି । କିନ୍ତୁ ମାନ୍ଦ୍ରାବାଜୁ ଶହୀଦଙ୍କୁ ସମ୍ମାନ ଜଣେଇ ଏବେ ମଧ ଦାସୁରାମ ଗୀତ ଗାଉଛନ୍ତି , ମୋ ପାଖରେ ବସିଛନ୍ତି , ଏପରି ମନେହୁଏ ।

ଶ୍ରୀକାକୁଲମ୍ ଗିରିଜନ ସଂଘର୍ଷ ଧାରାରେ ଦାସୁରାମ ଗତ ୧୨ ବର୍ଷ ଧରି ଚରମ ତ୍ୟାଗ ଓ ନିଷ୍ଠାର ସହ ନିଜର ଗୀତ ସଙ୍ଗୀତ ଜରିଆରେ ଶୋଷିତ ଆଦିବାସୀଙ୍କୁ ସଂଗଠିତ କରି ଆସୁଥିଲେ । କୁଇ ଭାଷା ଓ ସଂସ୍କୃତିର ବିକାଶ ପାଇଁ ସେ ଲୋକଙ୍କର ଲୋକ ହୋଇ କାମ କରିଗଲେ । ଏଥି ମଧରେ ଅନେକ ଲୋକ ଶାସକ ଶ୍ରେଣୀର ଦମନରେ ଚାପି ହୋଇ ପଡିଥିବାବେଳେ, ଦାସୁରାମ ଦମନ ଅତ୍ୟାଚାରକୁ ସିଂହ ଭଳି ସାମ୍ନା କରିଛନ୍ତି । ଭୂମିଗତ ଜୀବନରେ ଚିକିତ୍ସାର ଅଭାବରେ ସେ ଅଧା ବାଟରେ ଚାଲିଗଲେ । ତାଙ୍କର ମୃତ୍ୟୁ ପାଇଁ ସରକାର ପୂର୍ଣ୍ଣତଃ ଦାୟୀ । ତାଙ୍କ ସଂଗୀତର କଣ୍ଠରୋଧ ପାଇଁ. ଗତ ଦିନମାନଙ୍କରେ ସରକାରଙ୍କର ମୋଷ୍ଟ ୱାଂଟେଡ୍ ବ୍ୟକ୍ତି ରୂପେ ତାଙ୍କୁ ଚିତ୍ରିତ କରିଥିଲା ପୁଲିସ୍ । ଏଥିରୁ ସ୍ପଷ୍ଟ ଯେ , ଜଣେ ଶୋଷିତର କଲମ ଓ ଖଂଜଣିକୁ ନେଇ ଶାସକ ଶ୍ରେଣୀ କେତେ ଆତଙ୍କିତ । ତାଙ୍କ ବିୟୋଗରେ ଓଡ଼ିଶାରେ ବିପ୍ଳବୀ ଜନବାଦୀ ଆନ୍ଦୋଳନର ଅଭୂତ କ୍ଷତି ଘଟିଲା ଓ ମୁଁ ମୋର ଜଣେ ସହଯୋଦ୍ଧାଙ୍କୁ ହରେଇଲି ।

***- ଦଣ୍ଡପାଣି ମହାନ୍ତି , ସାଧାରଣ ସମ୍ପାଦକ , ଓଡ଼ିଶା ଫରେଷ୍ଟ ମଜଦୂର ୟୁନିଅନ୍***

ଦାସୁରାମ ମାଲେକା ଜଣେ ବିପ୍ଳବୀ ଆଦିବାସୀ ଓ ସଙ୍ଗୀତଜ୍ଞ ଥିଲେ । ନିଜ ମାତୃଭାଷା କୁଇ ଭାଷାରେ ସାହିତ୍ୟ ସୃଷ୍ଟି କରି ସମାଜରେ ଚାଲିଥିବା ଶୋଷଣ , ଅନ୍ୟାୟ ଓ ଅରାଜକତା ବିରୁଦ୍ଧରେ ଜନ ଜାଗରଣ କରିପାରୁଥିଲେ । ଆଜି ସମାଜର ଅନେକ ଲିପି ଓ ଭାଷା ରହିଛି । ଓଡ଼ିଶାର ଓଡ଼ିଆ ଭାଷାକୁ ବିକଶିତ କରିବାକୁ ହେଲେ କୁଇ , ସରା ପରି ଭାଷାମାନଙ୍କରୁ ଶବ୍ଦଗୁଡ଼ିକୁ ନେଇ ଓଡ଼ିଆ ଅଭିଧାନରେ ସ୍ଥାନିତ କରିବା ଏକାନ୍ତ କାମ୍ୟ । ଏହି ଭାଷାମାନଙ୍କରୁ ସୃଷ୍ଟି ହୋଇଥିବା ଦାସୁରାମଙ୍କ ପରି କବିମାନଙ୍କ କୃତି ଗୁଡ଼ିକୁ ସାହିତ୍ୟର ମାନ୍ୟତା ଦେବା ଏକ ସାମ୍ବିଧାନିକ କର୍ତବ୍ୟ ।

ଦାସୁରାମଙ୍କ ପରି ଜଣେ ଦରଦୀ ବିପ୍ଳବୀ କବି କଳାକାରଙ୍କୁ ପୋଲିସ୍ ପ୍ରଶାସନ ଯେପରି ମିଥ୍ୟା ଅଭିଯୋଗରେ ଜେଲ୍‌ରେ ରଖିଥିଲା ଓ ପରେ କୋର୍ଟ ଦ୍ୱାରା ଖଲାସ୍ ହେବାପରେ ବି ପୁଣି ତାଙ୍କୁ ଗିରଫ କରିବାକୁ ଅବିରତ ଚେଷ୍ଟା ଚଳାଇଥିଲା , ତାହା ଦ୍ୱାରା ସେ ଲୋକଙ୍କ ପାଖରେ ଥାଇ ବି ଚିକିତ୍ସାରୁ ବଂଚିତ ହେଲେ । ସେଥିପାଇଁ ତାଙ୍କର ଅକାଳ ବିୟୋଗ ପାଇଁ ପୋଲିସ୍‌ର ଆତଙ୍କବାଦ ଦାୟୀ ।

ପ୍ରତ୍ୟେକ ମଣିଷର କଥା କହିବା , ଲେଖିବା ଓ ନିଜ ମତକୁ ଅନ୍ୟପାଖରେ ସାହିତ୍ୟ , ବହି , ସଂଗୀତ ଜରିଆରେ ପହଂଚାଇବା ଜନ୍ମଗତ ଅଧିକାର ରହିଛି । ଆମ ଦେଶରେ ଏହା ଏକ ମୌଳିକ ଅଧିକାର । ଏହି ମୌଳିକ ଅଧିକାରକୁ କ୍ଷୁର୍ଣ୍ଣ କରୁଥିବା

ସରକାରଙ୍କ ଦମନ ରାଷ୍ଟ୍ରର ସନ୍ତ୍ରାସବାଦ ବୋଲି କୁହାଯିବ । ଆଜି ସରକାର ଦାସୁରାମଙ୍କ ମୃତ୍ୟୁପରେ ସମୀକ୍ଷା କରୁ ଓ ବୁଦ୍ଧିଜୀବିମାନେ ସରକାର ଉପରେ ଚାପ ଦିଅନ୍ତୁ ଯେ , ଦାସୁରାମଙ୍କ ପରି କବି ଓ ଲେଖକଙ୍କ କଲମକୁ ହତ୍ୟା ନକରନ୍ତୁ ।

ଦାସୁରାମ ସବୁଦିନ ପାଇଁ ସମାଜରେ ପରିବର୍ତ୍ତନ ପାଇଁ ଶୋଷଣ ବିରୋଧରେ ପ୍ରେରଣା ହୋଇରହିବେ ।

*-ପ୍ରଫୁଲ୍ଲ ସାମନ୍ତରା , ଲୋକଶକ୍ତି ଅଭିଯାନ*

*ସୌଜନ୍ୟ - ନିସାନ୍*

ବିପ୍ଳବୀ କୁଇ କବି ଦାସୁରାମ ମାଲେକା ପୁଲିସ ବାଣରେ ନହେଲେ ମଧ ମହାମାରୀ ବୀଜାଣୁ ବାଣରେ ଶହିଦ୍ ହେଲେ । ଶୋଷଣ , ଲୁଣ୍ଠନ , ଦମନ , ବୈଷମ୍ୟ ଆଦି ଜନ୍‌ବିରୋଧୀ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିରୋଧ ସାଂସ୍କୃତିକ ଆନ୍ଦୋଳନ କରୁ କରୁ ସେ ତଥାକଥିତ ଜନମଙ୍ଗଳକାରୀ ରାଷ୍ଟ୍ରର ସ୍ୱାସ୍ଥ୍ୟ ବ୍ୟବସ୍ଥାରେ ଥିବା ବୈଷମ୍ୟର ଶିକାର ହେଲେ । ଦକ୍ଷିଣ ଓଡ଼ିଶାର ବ୍ୟାପକ ଆଦିବାସୀ ଇଲାକାରେ ଶହ ଶହ ନିରୀହ ଦରିଦ୍ର ଲୋକଙ୍କ ମହାମାରୀରରେ ମୃତ୍ୟୁ ସହିତ , ଜନବାଦୀ କବିଙ୍କର ଶହିଦତ୍ୱ ଏହି ବୈଷମ୍ୟ ବ୍ୟବସ୍ଥାକୁ ପୁଣିଥରେ ପର୍ଦ୍ଦାଫାସ୍ କରିଛି । ବିପ୍ଳବୀ କବିଙ୍କର ଶହିଦତ୍ୱ ବ୍ୟର୍ଥ ଯିବନାହିଁ । ତାଙ୍କର ଏହି ଅକାଳ ଶହିଦତ୍ୱ ବ୍ୟବସ୍ଥା ବିରୋଧୀ ଆନ୍ଦୋଳନକୁ ଆହୁରି ଶାଣିତ ଓ ମଜଭୁତ କରି ଗଢ଼ିତୋଳିବ । ଏଣୁ ବ୍ୟବସ୍ଥା ବିରୋଧୀ ବିପ୍ଳବୀ ଆନ୍ଦୋଳନକୁ ସାଲିସ୍‌ହୀନ କରି ଆଗକୁ ବଢ଼ାଇ ନେବା ହିଁ ଦାସୁରାମଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଂଜଳି ହେବ ।

*- ବିଶ୍ୱପ୍ରିୟ କାନୁନ୍‌ଗୋ , ମାନବାଧିକାର କର୍ମୀ*

*ସୌଜନ୍ୟ -ନିସାନ୍*

ଦାସୁରାମଙ୍କୁ ଚିହ୍ନିବା ପାଇଁ ଯେଉଁ ମାନସିକତା ଦରକାର, ତାହା କେତେ ଆମ ଲୋକଙ୍କ ପାଖରେ ଅଛି ଆମେ ସମସ୍ତେ ଜାଣିଛେ । ନିଜ ଭାଷା ଓ ସଂସ୍କୃତିକୁ ମାଧମ କରି ନିଜ ଚାରିପଟର ପରିସ୍ଥିତିକୁ ଦର୍ଶାଇବା ଏବଂ ତା'ର ପ୍ରତିକାର ଉଦ୍ଦେଶ୍ୟରେ ଲୋକଙ୍କୁ ସଂଗଠିତ କରିବା ପାଇଁ ଦାସୁରାମ ଯେଉଁ ଭୂମିକା ନିଭାଇଛନ୍ତି , ତାହା କେବଳ ଆଦିବାସୀ ଅଂଚଳ ନୁହେଁ , ସମଗ୍ର ଓଡ଼ିଶା ପାଇଁ ଏକ ବଳିଷ୍ଠ ବାର୍ତ୍ତା ଦେଇଥାଏ ।

*- ସୁଧୀର ପଟ୍ଟନାୟକ , ସଂପାଦକ , 'ସମଦୃଷ୍ଟି'*

*ସୌଜନ୍ୟ - ନିସାନ୍*

ଦାସୁରାମ ମାଲେକା ପ୍ରଚଳିତ ସ୍ରୋତର ବିରୁଦ୍ଧରେ ପରିବର୍ତ୍ତନକାମୀ ଜଣେ ବପ୍ଳବୀ କବି କଳାକାର । ସଭା ସମାରୋହରେ ପୁରସ୍କାର ପ୍ରଶଂସାର ନିଶାରେ ନଥାଇ କେବଳ ନିଷ୍ପେସିତ ଲୋକଙ୍କ ଭାଷାରେ ତାଙ୍କର ଅନ୍ତଃଭାଷାକୁ ଗାଇ ଗାଇ ସମତାଳରେ ଚାଲୁଥିବା ଜଣେ ଆଦିବାସୀ ଯୁବକ । ଆଦିବାସୀଙ୍କ ଚେତନାକୁ ଜାଗ୍ରତ କରିବା ପାଇଁ ଏହି ସାଂସ୍କୃତିକ କର୍ମୀଙ୍କ କାମକୁ ନକ୍ସଲ ଗତିବିଧି ଦର୍ଶାଇ ମୁଣ୍ଡଜାମିନି ଘୋଷଣା କରିଥିଲେ ବିଜେଡି-ବିଜେପି ସରକାର । ଅବଶ୍ୟ ଏଇମିତି ଘଟଣା କଂଗ୍ରେସ ଅମଳରେ ଘଟିବାର ମଧ ଇତିହାସ ରହିଛି । ଏକ ଲକ୍ଷ ଟଙ୍କାର ମୁଣ୍ଡ ଜାମିନ୍ ଘୋଷଣା ସତ୍ୱେ , ଅବିଚାଳିତ ଭାବେ ସେ ନିଜର ସଂଘର୍ଷକୁ ଜାରି ରଖି ଝାଡ଼ାବାନ୍ତିରେ ହିଁ ତାଙ୍କର ଜୀବନ ଚାଲିଗଲା । ଦାସୁରାମ ମାଲେକାଙ୍କ କର୍ମମୟ ଜୀବନ ସାଂସ୍କୃତିକ ଆନ୍ଦୋଳନ କର୍ମୀଙ୍କୁ ପ୍ରେରଣା ଯୋଗାଇବ । ସେହି ବିପ୍ଳବୀଙ୍କୁ ଗାଁ ମାଏଟ୍ ସାଂସ୍କୃତିକ ଆନ୍ଦୋଳନର କ୍ରାନ୍ତିକାରୀ ଅଭିବାଦନ ।

*- ଗାଁ ମାଏଟ୍ ସାଂସ୍କୃତିକ ଆନ୍ଦୋଳନ , ବରଗଡ଼*
*ସୌଜନ୍ୟ - ନିସାନ୍*

ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଉଚ୍ଛେଦ କରୁଥିବା , ବିପ୍ଳବ ପାଇଁ ସଶସ୍ତ୍ର ବାହିନୀର ଯେତିକି ଆବଶ୍ୟକ , ସେତିକି ଆବଶ୍ୟକ ଏକ ସାଂସ୍କୃତିକ ବାହିନୀ । ଏହି ଧାରାରେ ସେ ଗୀତକୁ ମୁଖ୍ୟ ଅସ୍ତ୍ର ରୂପେ ବ୍ୟବହାର କରୁଥିଲେ । ରାଷ୍ଟ୍ରର ବର୍ବର ଦମନ ପୀଡ଼ନ ସତ୍ୱେ ସେ କେବେ ତାଙ୍କର ବିପ୍ଳବୀ ନୀତି ଆଦର୍ଶରୁ ଓହରି ଯାଇନଥିଲେ । ଜୀବନର ଶେଷ ଯାଏଁ ଜନଗଣଙ୍କ ସଂଗ୍ରାମରେ , ସେବାରେ ହିଁ ନିଜକୁ ଉତ୍ସର୍ଗ କରିଗଲେ ।

ସାଥୀ ଦାସୁରାମଙ୍କ ମୃତ୍ୟୁକୁ ଆମେମାନେ କଦାପି ସ୍ୱୀକାର କରିପାରୁନାହୁଁ । କାରଣ ସେ ଶୋଷିତ ମଣିଷର ହୃଦୟରେ ସ୍ଥାନ ପାଇସାରିଛନ୍ତି । ତାଙ୍କୁ ଆମର ରକ୍ତିମ ଶ୍ରଦ୍ଧାଂଜଳି ।

*- ବିପ୍ଳବୀ ସାଂସ୍କୃତିକ ସଂଘ , ଜଗତ୍‌ସିଂହପୁର*



# ବିପ୍ଳବୀ କବି ଓ୍ଵାରଓ୍ଵାରା ରାଓଙ୍କର ବିବୃତି

## ଦାସୁରାମ ମାଲେକାଙ୍କୁ ଲାଲ୍‌ସଲାମ୍

ଓଡ଼ିଶାର ଜଣେ ମହାନ୍ ସାଂସ୍କୃତିକ କର୍ମୀ ଓ ପ୍ରସିଦ୍ଧ ବିପ୍ଳବୀ ଗାୟକ କମ୍ରେଡ୍ ଦାସୁରାମ୍ ମାଲେକା ତାଙ୍କର ଭୂମିଗତ ଜୀବନରେ ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିବା କଥା ଶୁଣି ମୋତେ ଖୁବ୍ ଧକ୍‌କା ଲାଗିଲା । ସମଗ୍ର ପୃଥିବୀରେ ନୂତନ ଜୀବନର ଅନ୍ୱେଷଣରେ ଥିବା ଆଦିବାସୀ ସଂସ୍କୃତିର ପ୍ରତୀକ ହେଉଛନ୍ତି ଦାସୁରାମ ମାଲେକା । ମାନବଶାସ୍ତ୍ର ଓ ଇତିହାସ ପ୍ରମାଣିତ କରିଛି ଯେ , ଆଦିବାସୀ ମାନେ ପୁରାତନ ଯୁଗରୁ ଯେତେବେଳେ ଖାଦ୍ୟ ସଂଗ୍ରହ କରିବାକୁ ଯାଉଛନ୍ତି ସେମାନେ ଏକ ଶିକାର ସଂସ୍କୃତି ଭିତରେ ପ୍ରବେଶ କରିଯାଉଛନ୍ତି । ଏହିଭଳି ଦଳବଦ୍ଧ ଭାବେ ଶିକାର କରିବାର ଅଭ୍ୟାସ ନୂତନ କଳା , ନୃତ୍ୟ ଓ ଗୀତର ସୃଷ୍ଟିକର୍ତ୍ତା । ଏକ ପଶୁକୁ ଶିକାର କରିବା ପରେ ସେମାନେ ଗୀତ ଗାଇ ଓ ନାଚ କରି ଖୁସି ମନଉଛନ୍ତି , ଏଇଠୁ ହିଁ କଳାର ସୃଷ୍ଟି ହେଉଛି ।

ଖାଦ୍ୟ ସଂଗ୍ରହ କରିବାରେ ସାମୁହିକ ଶ୍ରମ ଦେଇ ଅଂଶଗ୍ରହଣ , ସାମୁହିକ ସଂସ୍କୃତିର ନିର୍ଭୁଲ ପ୍ରଦର୍ଶନ ଏବଂ ଉତ୍ପାଦନ କ୍ଷେତ୍ରରେ ସାମୁହିକ ଶ୍ରମଦାନ ଶ୍ରେଣୀ ସଂଗ୍ରାମର ସର୍ବୋଚ୍ଚ ସ୍ଥିତି ଅଟେ ।

କମ୍ରେଡ଼ ଦାସୁରାମ ମାଲେକା ଯିଏକି ହରପ୍ପା ଓ ମହେନଜୋଦାରୋ ଏବଂ କାନୁ ଓ ସିଧୁର ବିପ୍ଳବୀ ସଂସ୍କୃତିକୁ ଉତରାଧିକାରୀ ଭାବେ ପାଇଥିଲେ , ସେହି ସଂସ୍କୃତିକୁ ନକ୍ସଲବାଡ଼ି ଆନ୍ଦୋଳନର ଉତରାଧିକାର ସୂତ୍ରରେ ମିଳିଥିବା ଶ୍ରେଣୀ ସଂଗ୍ରାମରେ ସାମିଲ୍ କରାଇ ତାକୁ ଆହୁରୀ ଶକ୍ତିଶାଳୀ କରିଦେଲେ ।

ନକ୍ସଲବାଡ଼ି ଏବଂ ଶ୍ରୀକାକୁଲମ୍ ଆଦିବାସୀ ବିଦ୍ରୋହ ଯାହା ଓଡ଼ିଶାରେ ଚାଲିଥିବା ବିପ୍ଳବୀ ଆନ୍ଦୋଳନ ପାଇଁ ପ୍ରେରଣାର ଉତ୍ସ । ଆନ୍ଧ୍ର ଓ ଓଡ଼ିଶାରେ ବିପ୍ଳବୀ ସଂସ୍କୃତିର ପଥ ପ୍ରଦର୍ଶକ କମ୍ରେଡ୍ ସୁବାରାଓ ପାଣିଗ୍ରାହୀ ଦାସୁରାମ ମାଲେକାଙ୍କ ଭଳି ଅନେକ ସାଂସ୍କୃତିକ କର୍ମୀଙ୍କୁ ବାଟ କଢ଼େଇ ନେଇଛନ୍ତି । ରଙ୍ଗମାଟିଆ ପାହାଡ଼ରେ ରମେଶଚନ୍ଦ୍ର ସାହୁ , ତମଡ଼ା ଚିନାବାବୁ , ପଂଚାଦି କ୍ରିଷ୍ଣମୁର୍ତି ଏବଂ ସୁବାରାଓ ପାଣିଗ୍ରାହୀଙ୍କର ଆତ୍ମବଳିଦାନ ଆନ୍ଧ୍ର ଓ ଓଡ଼ିଶାର ସୀମାନ୍ତ ଅଂଚଳରେ ବିପ୍ଳବର ପଥକୁ ଅଲୋକିତ କରିଦେଲା । ତା'ପରେ ଆନ୍ଧ୍ର-ଓଡ଼ିଶା ସୀମାନ୍ତ ସ୍ୱତନ୍ତ୍ର ଗେରିଲା ଜୋନ୍ ଗଠନ କରିବା ଦିଗରେ , ସାମ୍ରାଜ୍ୟବାଦ ଓ ପୁଁଜିବାଦର ଦଲାଲ୍ ସାଜିଥିବା ରାଷ୍ଟ୍ର ବିରୁଦ୍ଧରେ ଜନଯୁଦ୍ଧକୁ ତୀବ୍ର କରି ଅନେକ ବଳିଦାନ ମଧଦେଇ ଏହି ସଂଗ୍ରାମ ଏକ ଲମ୍ବା ପଥ ଅତିକ୍ରମ କରିଛି । ଆନ୍ଧ୍ର-ଓଡ଼ିଶା ସୀମାନ୍ତ ବିପ୍ଳବୀ

ଅଂଚଳ ସମୁଦାୟ ୯ଟି ଜିଲ୍ଲାକୁ ନେଇ ଗଠିତ । ଉତର ଆନ୍ଧ୍ର ପ୍ରଦେଶର ୩ଟ ଓ ଦକ୍ଷିଣ ଓଡ଼ିଶାର ୬ଟି ଜିଲ୍ଲାକୁ ନେଇ ଗଠିତ ଏହି ଅଂଚଳ ପ୍ରାୟ ସବୁ ଆଦିବାସୀ ବହୁଳ ଅଟେ ।

ଏହା ସେହି ଅଂଚଳ ଯେଉଁଠି ନୂତନ ଗଣତନ୍ତ୍ର ହାସଲ ଦିଗରେ ଚାଲୁରହିଥିବା ସଶସ୍ତ୍ର କୃଷି ବିପ୍ଳବକୁ ଆଗେଇ ନେବା ଦିଗରେ ଦାସୁରାମ ମାଲେକା ଜନ ନାଟ୍ୟ ମଣ୍ଡଳୀ (ଜେଏନ୍ଏମ୍) ଭଳି ସାଂସ୍କୃତିକ ବିପ୍ଳବୀ ଦଳର ନେତୃତ୍ୱ ନେଇଥିଲେ । ତାଙ୍କ ସାଂସ୍କୃତିକ ଦଳର ପ୍ରଚାର ଜଙ୍ଗଲର ନିଆଁ ଭଳି ବ୍ୟାପିଯାଇଥିଲା , ଯାହାକି ମହାରାଷ୍ଟ୍ରର ବିଳାସ ଘୋଗ୍ରେଙ୍କ ସହିତ ତୁଳନୀୟ । ଏହା ଆଉ ଜଣେ ସୁବାରାଓ ପାଣିଗ୍ରାହୀଙ୍କୁ ମନେ ପକେଇଦିଏ ।

୨୦୦୬ ମସିହା ଜୁନ୍ ୯ ତାରିଖରେ ଓଡ଼ିଶା ସରକାର ଜନ ନାଟ୍ୟ ମଣ୍ଡଳୀ ସହିତ ସିପିଆଇ(ମାଓବାଦୀ) ଏବଂ ଅନ୍ୟ କିଛି ଗଣ ସଂଗଠନ ଗୁଡ଼ିକୁ ନିଷିଦ୍ଧ କରିଥିଲେ ମଧ ଉପିଡ଼ୀତ ଜନଗଣଙ୍କ ମଧରେ ଘୂର୍ଣ୍ଣିଝଡ଼ ପରି ବ୍ୟାପି ଯାଇଥିବା ଆନ୍ଦୋଳନର ପ୍ରଭାବକୁ ପ୍ରତିରୋଧ କରିବାରେ ବ୍ୟର୍ଥ ହେଲେ । ଏହା କମ୍ରେଡ଼ ଦାସୁରାମ ମାଲେକାଙ୍କୁ ଭୂମିଗତ ହେବା ପାଇଁ ବାଧ କରିଥିଲା । ସେ ସବୁବେଳେ ଜଣେ ପେସାଦାର ବିପ୍ଳବୀ ଥିଲେ । ସେ ମିଥ୍ୟା କେଶ୍‌ରେ ଓ୍ୱାଇଜାକ୍ ଜେଲ୍‌ରେ ବନ୍ଦୀ ଜୀବନ ବିତାଇଥିଲେ ।

ତାଙ୍କର ଏଆଇଏଲ୍ଆର୍‌ସି ରେ ଯୋଗଦାନ ଏବଂ ସର୍ବ ଭାରତୀୟ ସ୍ତରରେ କରିଥିବା ଅନ୍ୟାନ୍ୟ ବିପ୍ଳବୀ ସାଂସ୍କୃତିକ କାର୍ଯ୍ୟକ୍ରମ ଗୁଡ଼ିକ ମୋ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିଛି ।

ମୁଁ ନିର୍ଦ୍ଦିଷ୍ଟ ଭାବେ ଗୋଟିଏ ଘଟଣାକୁ ମନେପକେଇବାକୁ ଚାହେଁ ଯେ , ଓଡ଼ିଶାରେ ମଧ ନକ୍ସଲମାନଙ୍କ ସହିତ ଓଡ଼ିଶା ସରକାରଙ୍କ କଥାବାର୍ତାକୁ ଆରମ୍ଭ କରିବା ପାଇଁ ୨୦୦୪ ମସିହା ସେପ୍ଟେମ୍ବର ୧୪ ତାରିଖରେ ଦମନ ପ୍ରତିରୋଧ ମଂଚର ଆବାହକ ଦଣ୍ଡପାଣି ମହାନ୍ତି ଓ ଦାସୁରାମଙ୍କ ସହିତ ମିଶି ମୁଖ୍ୟମନ୍ତ୍ରୀଙ୍କୁ ଭେଟିଥିଲୁ । ବିପ୍ଳବୀ ଆନ୍ଦୋଳନ ପକ୍ଷରୁ ଆମେ ସରକାରଙ୍କ ଆଗରେ ଓଡ଼ିଶାର ଜନଗଣଙ୍କ ବିଭିନ୍ନ ଦାବି ଉପସ୍ଥାପନ କରିଥିଲୁ । ଆମର କଥାବାର୍ତା ପ୍ରାୟ ୨ ଘଂଟା ଧରି ଚାଲିଥିଲା । ତା'ପରେ ଆମେ ଭୁବନେଶ୍ୱରର ସଚିବାଳୟ ସାମ୍ନାରେ ଆୟୋଜିତ ଏକ ଚିତାକର୍ଷକ ସାଧାରଣ ସଭାରେ ଯୋଗଦେଲୁ ଯେଉଁଠି ମୁଁ ଦାସୁରାମ ମାଲେକାଙ୍କର ଉତ୍ସାହଜନକ ସାଂସ୍କୃତିକ କାର୍ଯ୍ୟକ୍ରମ ଦେଖିବାର ସୁଯୋଗ ପାଇଥିଲି । ଯଦିଓ ତାଙ୍କ ଗୀତ ଗୁଡ଼ିକରେ କେତେ ସାହିତ୍ୟ ରହିଛି ସେକଥା ବିଚାର କରିବାର ଯୋଗ୍ୟତା ମୋର ନାହିଁ ତଥାପି ତାଙ୍କର ପ୍ରଥମ କାର୍ଯ୍ୟକ୍ରମ ଦେଖି ମୁଁ କହିପାରେ ଯେ , ସେ ସୁବାରାଓ ପାଣିଗ୍ରାହୀଙ୍କର ମହାନ୍ ପରମ୍ପରାକୁ ଚଳାଇ ରଖିଥିଲେ ।

ତା'ପରେ ୨୦୦୬ ମସିହା ମେ ୨୩ ତାରିଖରେ ବ୍ରହ୍ମପୁରରେ ନକ୍ସଲବାଡ଼ି ଦିବସ ପାଳନ ଅବସରରେ ଏକ ସଭାର ଆୟୋଜନ କରାଯାଇଥିଲା ଯେଉଁଥିରେ ଆଖପାଖ ଜିଲ୍ଲାରୁ ପ୍ରାୟ ୫୦୦ ଆଦିବାସୀ ଯୋଗ ଦେଇଥିଲେ । ସେଠାରେ ମୁଁ ତାଙ୍କୁ ଭେଟ ହେବାକୁ ଚାହୁଁଥିଲି ହେଲେ ସେ ମୋତେ ଭେଟ ହେବାକୁ ଆସିପାରିନଥିଲେ କାରଣ ସେତେବେଳକୁ ସେ ରାଜ୍ୟ ସରକାରର ଜଣେ 'ମୋଷ୍ଟ ୱାଂଟେଡ୍' ଲୋକ ହୋଇଯାଇଥିଲେ ।

କିଟସ୍ ନିଷିଧ ବିରୁଦ୍ଧରେ ଲଢ଼ିଥିବା କେସ୍ ରେ ବିଜୟଲାଭ କଲାପରେ ଭିରାସମ୍ (ଆନ୍ଧ୍ର ପଦେଶର ବିପ୍ଳବୀ ଲେଖକ ଆସୋସିଏସନ୍) ର ଏକ ରାଜ୍ୟ ସମ୍ମିଳନୀ ୨୦୦୬ ମସିହା ଜୁନ୍ ମାସରେ ହାଇଦ୍ରାବାଦରେ ଅନୁଷ୍ଠିତ ହୋଇଥିଲା । ଯେଉଁଥିରେ ଓଡ଼ିଶାରେ ଜନ ନାଟ୍ୟ ମଣ୍ଡଳୀକୁ ନିଷିଦ୍ଧ କରିବା ଏବଂ ଦାସୁରାମ ମାଲେକାଙ୍କୁ ମିଥ୍ୟା କେଶ୍‌ରେ ଫସେଇବା ପାଇଁ ଚାଲିଥିବା ଷଡ଼ଯନ୍ତ୍ରର ନିନ୍ଦା କରାଯାଇଥିଲା ।

୨୦୦୭ ମସିହାରେ ଦିଲ୍ଲୀରେ ଅନୁଷ୍ଠିତ ପିଡିଏଫ୍‌ଆଇର ସର୍ବ ଭାରତୀୟ ସମ୍ମିଳନୀରେ ମଧ ମୁଁ ଏହି ବିଷୟରେ ପ୍ରତିବାଦ କରିଛି । ମୁଁ ମୋର ନିଜ ତରଫରୁ ଏବଂ ଭିରାସମ୍ ତରଫରୁ କମ୍ରେଡ୍ ଦାସୁରାମ ମାଲେକାଙ୍କ ଭଳି ଜଣେ ମହାନ୍ ସାଂସ୍କୃତିକ କର୍ମୀଙ୍କୁ ଭକ୍ତି ଓ ସମ୍ମାନ ଜଣାଉଛି । ଯେଉଁଠି ସେ ଏକ ବୀର ଯୋଦ୍ଧା ଏବଂ ବିପ୍ଳବୀ ସାଂସ୍କୃତିକ କର୍ମୀ ଭାବରେ ତାଙ୍କର ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି ସେହି ମାଟିକୁ ମୁଁ ନାଲି ଫୁଲର ହାରଟିଏ ପିନ୍ଧାଉଛି ।



ଦାସୁରାମଙ୍କ ନିଜ କଲମରୁ

# ମୋର ୧୬ ମାସର ବନ୍ଦୀ ଜୀବନ

*- ଦାସୁରାମ ମାଲେକା*

ଗତ ୨୦୦୩ ମସିହା ଫେବୃଆରୀ ଛଅ ତାରିଖରେ , ଦିନ ୧ ଘଣ୍ଟା ୪୦ ମିନିଟ୍ ସମୟରେ , ଓଡ଼ିଶାର ରାୟଗଡ଼ା ରେଳ ଷ୍ଟେସନ୍ ପାଖ ମା ମଙ୍ଗଳା ହୋଟେଲ ପଛପଟେ ମୁଁ ପରିଶ୍ରା କରୁଥିବା ସମୟରେ , ଆନ୍ଧ୍ରର ସାଧା ପୋଷାକଧାରୀ ଗ୍ରେ ହାଉଣ୍ଡସ୍ ପୋଲିସ୍ ମାନେ ମୋତେ ଅପହରଣ କରିନେଲେ । ଏହି ଘଟଣା ପରଠାରୁ ମୋତେ ନେଇ ଓଡ଼ିଶା ରାଜନୀତିରେ ଏକ ଝଡ଼ ଦେଖାଦେଲା ।

ଜଣେ ଗରିବ ଆଦିବାସୀ କୁଇ ପିଲା ମୁଁ । ବାପାକୁ ପିଲାବେଳୁ ହରାଇ ବହୁ ଦୁଃଖ କଷ୍ଟରେ ପାଠ ଦି ଅକ୍ଷର ପଢ଼ିଛି । ମାତ୍ର ସାତ କ୍ଲାସ ପଢ଼ିଛି । ମୋର ଭାଷା 'କୁଇ' ପ୍ରତି ମୋର ବେଶି ପ୍ରେମ ରହିଛି । ମୋର ଭାଷାର ଲୋକ 'କୁଇ' ଓ ଅନ୍ୟ ଆଦିବାସୀ 'ସରା' ଓ ଗରିବ ଲୋକଙ୍କ ଦୁଃଖ ମୋତେ ଦୁଃଖ ଦେଇଛି । ଏହି ଦୁଃଖ ମଧରୁ ମୁଁ ବିପ୍ଳବୀ ରାଜନୀତି ପ୍ରତି ଆକୃଷ୍ଟ ହେଲି । ବିପ୍ଳବୀ ଆଦର୍ଶ - ନିଜର ଅଧିକାର , ନିଜର ଭାଷା , ନିଜର ଦେଶ ପାଇଁ ମୁଁ ସଂଗ୍ରାମ କରିଛି । ମୁଁ ଯାହା କରିଛି ସରକାରର ଆଇନ ମଧରେ ରହି କରିଛି । ମୁଁ ସମାଜ ପରିବର୍ତ୍ତନର କଥା କହୁଛି , ବିପ୍ଳବର କଥା କହୁଛି । ମୋର ଗୀତରେ ଆଦିବାସୀର , ଦୁଃଖୀ ବିପ୍ଳବର କଥା ଗାଉଛି । ଏଥିରେ କିଛି ଭୁଲ ନାହିଁ , କିଛି ଦୋଷ ନାହିଁ ବୋଲି ଏବେ ମଧ ମୁଁ କହୁଛି । ମାତ୍ର ଏ ଧନୀ ଲୋକର ସରକାର , ଏ ଠକ ସରକାର ମୋର କଣ୍ଠକୁ ଜବରଦସ୍ତ ବନ୍ଦ କରିବା ପାଇଁ ମୋ ଉପରେ ନାହିଁ ନଥିବା ଅତ୍ୟାଚାର କଲା । ୧୬ ମାସ କାଳ ମୋ ପରି ଜଣେ ନିର୍ଦ୍ଦୋଷକୁ ବନ୍ଦୀ କରି ମିଛ କେଶ୍ ଦ୍ୱାରା ତାଡ଼ନା ଦେଲା । ସରକାର କହିବା ମତେ ମୋର ଅପରାଧ ହେଉଛି "ମୁଁ ରାୟଗଡ଼ା ଗଜପତି ଜିଲ୍ଲାର ଗରିବ ଆଦିବାସୀ ଚାଷୀ-ମୂଲିଆଙ୍କର ଏକ ସଂଗଠନ 'ଚାଷୀ ମୂଲିଆ ସମିତି'ର ଜଣେ ନେତା ରହିଥିଲି ।" ମୁଁ କୌଣସି ହିଂସାତ୍ମକ ଘଟଣାରେ ସଂପୃକ୍ତ ନଥିଲେ ମଧ ସରକାରଙ୍କ ଦୃଷ୍ଟିରେ ମୁଁ ଜଣେ ସନ୍ତ୍ରାସବାଦୀ । ଆଦିବାସୀଙ୍କର ସମସ୍ୟା , ତାଙ୍କୁ କିପରି ସରକାର ଓ ସାହୁକାର ଠକୁଛି , କିପରି ସେମାନେ ମୁକ୍ତି ପାଇବେ , ଏ ବିଷୟରେ ମୁଁ ମୋ କୁଇ ଭାଷାରେ ଗୀତ ଲେଖୁଥିବାରୁ ଓ ଗାଉଥିବାରୁ ସରକାରଙ୍କ ନଜରରେ ମୁଁ ଜଣେ ନକ୍ସଲପନ୍ଥୀ । ମୁଁ ନକ୍ସଲପନ୍ଥୀ ବେଶରେ କେବେ ଥିବାର ପ୍ରମାଣ ସରକାର ଦେଇପାରିବେ କି ? ମାତ୍ର ମିଛ କେସ୍‌ରେ ଗିରଫ କରି କିପରି ମୋତେ ଜୀବନରେ ମାରିବାକୁ ଚେଷ୍ଟା କରୁଥିଲେ , ସେ କଥା ମୋ ଆଖି ଆଗରେ ଆଜି ଜଳ ଜଳ ଦେଖାଯାଉଛି ।

ସେହି ଦୁଃଖୀ ନିର୍ଯ୍ୟାତନାର କାହଣୀ ଲେଖିବା ବେଳେ , ଓଡ଼ିଶାର ଯେଉଁ କଳାକାର, କବି , ବୁଦ୍ଧିଜୀବିମାନେ ସଚେତନ ଭାବେ ମୋର ମୁକ୍ତି ପାଇଁ ଦାବି କଲେ ; ସରକାର ମୋ ପରି ଜଣେ ଅନାମଧେୟ କବିକୁ ଗିରଫ୍ କଲାବେଳେ ଯେଉଁମାନେ ପ୍ରତିବାଦ କରିଥାରେ ମୋତେ ଜଣେ ବିପ୍ଳବୀ କବିର ମର୍ଯ୍ୟାଦା ଆଣିଦେଲେ ; ମୋ ପାଇଁ ଯେଉଁ ତଥ୍ୟ ଅନୁସନ୍ଧାନ ଦଳ ଯାଇ ସରକାରର ଅସଲ ଦମନକାରୀ ମୁଖାକୁ ପଦାରେ ପକାଇଲେ ; ସେମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

**ଆନ୍ଧ୍ର ପୋଲିସ୍‌ର ଓଡ଼ିଶାରେ ଦାଦାଗିରି**

ଆନ୍ଧ୍ର ପୋଲିସ୍ ଆସି ଓଡ଼ିଶାରେ ଦାଦାଗିରି ଦେଖାଉଛନ୍ତି ବୋଲି ଆଗରୁ ମୁଁ ଶୁଣିଥିଲି । ମାତ୍ର ଏବେ ନିଜେ ଅନୁଭବ କଲି । ରାୟଗଡ଼ା ରେଳ ଷ୍ଟେସନ ଛକରୁ ଆସି ମୁଁ ପରିଶ୍ରା ବସିଛି , ଦୁଇଜଣ ସାଧା ପୋଷାକ ଲୋକ ଆସି ମୋତେ ଫିଲିମ୍ ଷ୍ଟାଇଲ୍‌ରେ ଧରିନେଲେ । ସେମାନେ ଥିଲେ ଆନ୍ଧ୍ରର ଗ୍ରେହାଉଣ୍ଡସ୍ ପୋଲିସ୍ । "କୁର୍‌ଚୁ କୁର୍‌ଚୁ" ବୋଲି ତେଲେଗୁରେ ମୋତେ କହିଲେ । ସେମାନଙ୍କ ମୋଟର ସାଇକେଲରେ ମୋତେ ଜବରଦସ୍ତ ବସାଇଲେ । ମୁଁ ସେମାନଙ୍କ କଥା ବୁଝିପାରୁନଥାଏ । ସେମାନେ ମଟର ସାଇକେଲ୍ ରେ ବସାଇଲା ବେଳେ ମୁଁ ଓହ୍ଲାଇ ପଡୁଥାଏ । ମୁଁ କାହିଁକି ଯିବି ? ମୋର କି ଦୋଷ ? ମୋତେ ତୁମ କଥା ବୁଝୁନି , ଓଡ଼ିଆ ଲୋକ ପାଖରେ ନେଇ ମୋର ଦୋଷ ବିଚାର କର ଆଦି କହିଲା ପରେ ସେମାନେ ମୋତେ ମାଡ଼ ମାରି ଜବରଦସ୍ତ ଗାଡ଼ିରେ ବସାଇ ନେଲେ । ଅଧା ବାଟରେ ଆଉ ଜଣକୁ ନେଇ ମୋତେ ଦେଖାଇଲେ । ସେ ତାଙ୍କର ଖବରଦାତା ହୋଇପାରେ । ସେ ହାତ ଠାରି ମୋତେ ନେଇଯିବା ପାଇଁ ଆଦେଶ ଦେଲେ । ବାଟରେ ମୋତେ 'ଲେଟର୍ ଲେଟର୍' ବୋଲି ମାଗିଲେ । ମୋ ପାଖରେ କିଛି ଚିଠି ଫିଠି ନାହିଁ ବୋଲି କହିଲି । ତା'ପରେ ମୋତେ ଆନ୍ଧ୍ରର କମରଡ଼ା ପୋଲିସ୍ ଥାନାକୁ ନେଇଗଲେ । ସେଠି ପୋଲିସ୍‌ମାନେ ମୋତେ ପରିହାସ କରି 'କମ୍ରେଡ୍ ଲାଲ୍‌ସଲାମ' ବୋଲି କହିଲେ । ହାଜତରେ ଏକ ଘଂଟା ରଖିଲେ । ମୋତେ ପୁରା ଲଙ୍ଗଳା କରି ରଖିଲେ । ଦିନ ଚାରି ଘଂଟା ବେଳକୁ ମୋତେ କହିଲେ ପାର୍ବତୀପୁର ଯିବା । ମୋତେ ଗୋଟେ ବୋମା ଧରାଇ କହିଲେ , ଏଇଟା ଧରି ଚାଲ । ଏ ବୋମା ଧରାଇ ହୁଏତ ମୋତେ ଜୀବନରେ ମାରିବା ପାଇଁ କିମ୍ବା ନକ୍ସଲପନ୍ଥୀ କେସ୍‌ରେ ଯୋଡ଼ିବା ପାଇଁ ଷଡ଼ଯନ୍ତ୍ର କରୁଛନ୍ତି ବୋଲି ଜାଣିପାରି, ମୁଁ ବୋମା ଧରିବାକୁ ମନାକଲି । ସେଇଟା ମୋର ନୁହେଁ , ମୁଁ ଧରିବି ନାହିଁ ବୋଲି କହିଲି । ପାର୍ବତୀପୁର ନେଇ ମୋ ଆଖିରେ ରୁମାଲ ବାନ୍ଧିଦେଲେ । ନକ୍ସଲ ଲୋକ କାହାକୁ ଜାଣିଛୁ ବୋଲି ପଚାରିଲେ । ମୁଁ ଜାଣିନି ବୋଲି କହିଲି । ମୋତେ ବାଡ଼ି ସହିତ ବେଶି

ମାଡ଼ ଦେଲେ । ପାର୍ବତୀପୁରରେ ଥାନା ଇନିସ୍‌ପେକ୍ଟର୍ ପି.ବିଜୟକୁମାର ମୋତେ ବେଶି ମାଡ଼ ଦେଲା । ତେଲୁଗୁରେ ମୋତେ ଖରାପ ଭାଷାରେ ଗାଳି ଦେଲା । ମୋର ତିନି ଶହ ଟଙ୍କା ଓ ଘଂଟା ସେ ନେଇଗଲା । ପାର୍ବତୀପୁରକୁ କମରଡ଼ା ଥାନାବାଲା ଆସି ମୋତେ କହିଲେ , ତୁ କେତେ ଲୋକଙ୍କୁ ଧରାଇ ଦେ , ତୋତେ ଛାଡ଼ିଦେବୁ । ପୁଣି ମୋତେ କହିଲେ "ଆମ ସାଥିରେ ମିଶି ଓଡ଼ିଶାର ଗୁଡ଼ାରି ଅଂଚଳର ପାରକୁପୁଡ଼ା ଗାଁକୁ ଚାଲ୍ । ସେଠୁ ଗାଁ ଲୋକଙ୍କୁ କେତେଜଣଙ୍କୁ ଡାକି ଧରାଇଦେ । ତାହେଲେ ତୋତେ ଛାଡ଼ିଦେବୁ । ତୁ ନକ୍ସଲ ଡ୍ରେସ୍ ପିନ୍ଧି ଯିବୁ ।" ମୁଁ ଏସବୁ କରିବା ପାଇଁ ମନା କଲି । ରାତିରେ ମୋତେ ବିଜୟନଗର ନେଲେ । ଡିଏସ୍‌ପି ପାଖକୁ ନେଇ ତାପରେ ଏକ ଗୁପ୍ତ ଆଡ୍ଡାକୁ ନେଲେ । ସେଠି ମୋ ମୁଣ୍ଡରେ ପିସ୍ତଲ ଲଗାଇ ଗୁଳି କରିବା ପାଇଁ ଦୁଇଜଣ ଧମକ ଦେଲେ । ଘର ଅନ୍ଧାର କରି ପୁଣି ପିସ୍ତଲ ଲଗାଇ , ମାରି ଦେବାର ଧମକ ଦେଲେ । ପାଟିରେ ପିସ୍ତଲର ନଳୀ ପୁରାଇ ଟ୍ରିଗର୍ ଚିପୁଥାନ୍ତି । ଏ ସମସ୍ତ ଧମକ ଓ ମାଡ଼ ମଧ୍ୟରେ ମୋତେ ଖାଲି ପଚାରୁଥାନ୍ତି , ନକ୍ସଲଙ୍କ ବିଷୟରେ କ'ଣ ଜାଣୁ କୁହ । ପୋଲିସମାନେ ମୋ ଟଙ୍କା ନେବା କଥା ଡ଼ି.ଏସ୍.ପିକୁ ରିପୋର୍ଟ କରିବାରୁ ମୋତେ ଆହୁରି ମାଡ଼ ଦେଲେ ।

ଏ ଭିତରେ ଆନ୍ଧ୍ରର ଏହି ଜାଗାକୁ ରାୟଗଡ଼ା ଜିଲ୍ଲା ଗୁଣୁପୁର ଓ ପଦ୍ମପୁର ପୋଲିସ୍ ଆସି ମୋତେ ମଧ ପଚରା ଉଚରା କଲେ ଓ ବେଶି ମାଡ଼ ଦେଲେ । 'ମାଧବ କେସ୍‌ରେ ସିନା ଚାର୍ଜସିଟ୍ ପକାଇଛି , ତୋତେ ଯଯାତି କେସ୍‌ରେ ପକାଇଦେବୁ' ବୋଲି କହିଲେ । ଫୋଟୋ ଲଗାଇବୁ ବୋଲି କହିଲେ । ଏହିପରି ଛଅ ତାରିଖରୁ ସାତ ଦିନ ଯାଏଁ ମୋତେ ବେଶି ମାଡ଼ ମାରିଲେ । ପ୍ରତିଦିନ ଚାରି ପାଂଚ ଜଣ ଆସି ମୋତେ ମାରୁଥାନ୍ତି । କେତେ ଓଡ଼ିଆ ପୋଲିସ୍ ମାରିବା ପାଇଁ ଆସୁଥାନ୍ତି । ମୋତେ ମାଡ଼ ମାରି ମାରି ଦୁଇଟା ଠେଙ୍ଗା ଭାଙ୍ଗିଗଲା । କେତେ ରବର ପାଇପ ଖଣ୍ଡ ଖଣ୍ଡ ହୋଇଗଲା । କାନ୍ଥରେ ମୋତେ ଠେଲି ପିଟୁଥାନ୍ତି । ଜଣେ ବୁଢ଼ା ଓଡ଼ିଆ ପୋଲିସ୍ ଆସି କହିଲା , ଏଇଟାକୁ ରେଳ ଗାଡ଼ିରେ ସୁଆଇ ଦେଲେ ହେବ । ତେଲୁଗୁ ଜାଣିଛି , ମାତ୍ର କହୁନି ବୋଲି କହି ମୋତେ ଦୁଇ ଦିନ ମାରିଲେ । ଗଜପତି ଜିଲ୍ଲା ଲୋକ ହୋଇ କାହିଁକି ତେଲୁଗୁ ଜାଣିନୁ ବୋଲି କହି କହି ବେଶି ମାରୁଥାନ୍ତି ।

କରେଂଟ ତାର ମଧ ଧରିବାକୁ ମୋତେ ବାଧ କଲେ । ଗ୍ରେହାଉଣ୍ଡସ୍ ପୋଲିସ୍ ରହିବା ଜାଗାରେ ନେଇ ମୋତେ ଏପରି ମାଡ଼ ଦେଲେ ଓ କରେଂଟ ତାର ଧରିବାକୁ ବାଧ କଲେ । ଏପରି ମାଡ଼ ଖାଇ ପରଦିନ ସକାଳ ୮ ଘଂଟା ସମୟରେ ମୋର ଚେତା ହରାଇଲି । ସେଇଟା ଗୋଟେ ଗୁପ୍ତ ଆଡ୍ଡା । କାମ କରୁଥିବା ଲୋକ ଆସି ପାଣି ଛିଂଚି

ମୋର ଚେତା ଆଣିଲେ । ତାପରେ ଡିଏସ୍‌ପି ଆସିଲା । ପୋଲିସ୍‌ମାନେ ମୋତେ ହିନ୍ଦୀରେ କହୁଥାନ୍ତି । ମୁଁ ମଧ ଖଣ୍ଡି ହିନ୍ଦୀରେ ଉତର ଦେଉଥାଏ । ତା'ପରେ ଆଉ ମାଡ଼ ହେଲା ନାହିଁ । ୨୦ ତାରିଖରେ ଥାନାକୁ ନେଇ କେସ୍ ରିପୋର୍ଟ ଲେଖାଇଲେ । ମୋତେ ଗୋଟେ ପଟା ଧରାଇଲେ । ସେଥିରେ ଜୟରାମ ମାଝୀ , ନକ୍ସଲପନ୍ଥୀ ବୋଲି ଲେଖାଥିଲା । ସେଇଟା ଧରାଇ ଫଟୋ ଉଠାଇଲେ । ପଦ୍ମପୁର ଥାନାବାଲା ମଧ ଫଟୋ ଉଠାଇ ନେଇଥିଲେ । ୨୧ ତାରିଖରେ ବୋବୁଲି କୋର୍ଟକୁ ନେଇ ପୁଣି ଥାନାକୁ ଆଣିଲେ । ୨୨ ତାରିଖରେ ବିଶାଖାପାଟଣା ଜେଲରେ ମୋତେ ରଖିଲେ । ସେହି ଜେଲ୍‌ରେ ମୋତେ ମାର୍ଚ୍ଚ ୬ ତାରିଖ ଯାଏଁ ରଖିଲେ । "ଆନ୍ଧ୍ରର ବି ଟଙ୍କି ଗାଁରେ ମୁଁ କୁଆଡ଼େ ନକ୍ସଲକାମ କରିବାବେଳେ ପୋଲିସ୍ ମୋତେ ୨୦ ତାରିଖରେ ଧରିଛି" ବୋଲି ମିଛ କେସ୍ ଦେଲେ । ୫ଟି ପୋଷ୍ଟର୍ ମୋ ଠାରୁ ଜବତ୍ କରିଥିବାର ମିଛ ରିପୋର୍ଟ ମଧ ଦେଲେ । ପୋଲିସ୍ ମାଡ଼ ଦେଲା ବୋଲି କୋର୍ଟରେ କହିଲେ ତୋତେ ଜୀବନରେ ମାରି ଦେବୁ ବୋଲି ପୁଲିସ୍ ମାନେ ଧମକ ଦେଲେ । ମାରିକି ଫିଙ୍ଗିଦେବୁ , ଏନ୍‌କାଉଂଟର୍ କରିଦେବୁ ବୋଲି କହିଲେ । ଭୟରେ ମୁଁ ମଧ ମାଜିଷ୍ଟ୍ରେଟ୍ ଆଗର ଏ ମାଡ଼ ବିଷୟ କହିଲି ନାହିଁ । ମାତ୍ର ପରେ ଏ ବିଷୟ କୋର୍ଟରେ କହିଲି ।

ଆନ୍ଧ୍ର ପୋଲିସ୍ , ଓଡ଼ିଶା ସରକାର ଓ ଓଡ଼ିଶା ପୋଲିସ୍ ସହ ପୂରା ଯୋଗାଯୋଗ କରି କିଭଳି ଦାଦାଗିରି ଚଳାଉଛି , ଏହି ଘଟଣାରୁ ତାହା ଧରାପଡୁଛି । ମାତ୍ର ଓଡ଼ିଶାର ନବୀନ ପଟ୍ଟନାୟକ ସରକାର କିଛି ନଜାଣିବା ପରି ନାଟକ ଦେଖାଉଛି ।

**ଓଡ଼ିଶା ପୋଲିସ୍ : ଆନ୍ଧ୍ର ପୋଲିସ୍‌ର ସାନଭାଇ**

ତା'ପରେ ମାର୍ଚ୍ଚ ୬ ତାରିଖରେ ଓଡ଼ିଶା ପୋଲିସ୍ ମୋତେ ମିଛ କେସ୍ ଦେଖାଇ ଓଡ଼ିଶା ଆଣିଲେ । ମୋ ଘରୁ ତିନିଟା ବନ୍ଧୁକ ଜବତ ହୋଇଥିବାର ଏକ ମିଛ କେସ୍ ଦେଖାଇ ଏପରି କଲେ । ଆନ୍ଧ୍ରରୁ ଆଣି ମୋତେ ପାରଳାଖେମୁଣ୍ଡି ଏସ୍‌ପି ଧୀରେନ୍ଦ୍ର କୁଟ୍ଟେଙ୍କ ଘରକୁ ନେଲେ । ଗଜପତି ଜିଲ୍ଲା ମାଣ୍ଡିମେରା ପଁଚାୟତ ଅବିନାଶ , ପ୍ରଫୁଲ୍ଲ , ଶରତ , ପିତରକୁ ଧରାଇ ଦେବା ପାଇଁ ମୋତେ କହିଲେ । ମୁଁ କାହାକୁ ଧରାଇ ପାରିବି ନାହିଁ ବୋଲି କହିବାରୁ ଏସ୍‌ପି କହିଲା ଏଇଟାକୁ ନେଇଯାଅ । କାହାକୁ ଧରାଇ ନଦେଲେ ସେଇଠି ଗୁଳି କରି ମାରି ଫିଙ୍ଗିଦିଅ । ତା ପରଦିନ ଉଦୟଗିରି କୋର୍ଟକୁ ନେଲେ । ସେଠି ସାତ ଦିନ ହାଜତରେ ରଖିଲେ । ଖାଲି ପଚରାଉଚରା କରୁଥାନ୍ତି । ଡ଼ରା ଧମକ ଦେଉଥାନ୍ତି । ମାର୍ଚ୍ଚ ୧୩ ରେ କୋର୍ଟକୁ ନେଲେ । ଆନ୍ଧ୍ରରୁ ଆଣିଲା ବେଳେ ଗୋଟେ କେସ୍ ଦେଖାଇଥିଲେ । ୧୩ ରେ ଆଉ ତିନିଟା ମିଛ କେସ୍ ଦେଲେ । ପରେ ପୁଣି ଆଉ ଗୋଟେ କେସ୍

ଦେଲେ । ମୁଁ ପାର୍ବତୀପୁରରେ ଗ୍ରେହାଉଣ୍ଡସ୍ ଶିବିରରେ ମାଡ଼ ଖାଉଥିବାବେଳେ , ଗଜପତିରେ ଏକ ରାସ୍ତାରୋକ୍ ଆନ୍ଦୋଳନ ହୋଇଥିଲା । ସେହି ଆନ୍ଦୋଳନରେ ଗଛକଟା କେସ୍‌ରେ ମୋତେ ମଧ ଯୋଡ଼ି ଏକ କେସ୍ ଦେଲେ । ତା'ପରେ ମୋତେ ଜେଲ୍‌କୁ ପଠାଇଦେଲେ ।

**ତଥ୍ୟ ଅନୁସନ୍ଧାନ ଦଳର ଆଗମନ ଓ ତା'ପରେ**

ମୁଁ ଜେଲ୍‌ରେ ଥିବାବେଳେ , ଭୁବନେଶ୍ୱରରୁ ଏକ ତଥ୍ୟ ଅନୁସନ୍ଧାନ ଦଳ ଆସି ମୋ ଉପରେ ହୋଇଥିବା ଦମନ ନିର୍ଯ୍ୟାତନା ସଂପର୍କରେ ଜେଲ ମଧରୁ ରିପୋର୍ଟ ନେଲେ । ଏ ଘଟଣା ପରେ ଏସ୍.ପି ଆସି ମୋତେ ଧମକ ଦେଲେ । "ତୁ ନକ୍ସଲପନ୍ଥୀ ନୁହଁ ବୋଲି କାହିଁକି କହିଲୁ ? ତୁ କେତେ ପାଠ ପଢ଼ିଛୁ ? ସପ୍ତମ ପଢ଼ି ତୁ କବି ହୋଇପାରିବୁ କି ? କୁଇ କବି ବୋଲି କାହିଁକି କହିଲୁ ? କଅଁର ଏସ୍‌ଆଇ ବିଏ ପଢି ମଧ ଗୀତ ଲେଖି ଜାଣୁନି , ତୁ କେମିତି କବି ହେବୁ ? ତୁ ଟାଉଟର-ମିଛୁଆ" ବୋଲି କହି ଗାଳି ଦେଲେ । ଜେଲ ମଧରେ ମୋ ସହ କୌଣସି ସାକ୍ଷାତକାର ପାଇଁ ଅନୁମତି ନଦେବାକୁ ସେ ଜେଲରଙ୍କୁ କହିଲେ । ଅଧିକ ପୋଲିସ୍ ଫୋର୍ସ ଆଣି ଜେଲରେ ଜଗାଇଲେ । ମୋତେ ବେଲ୍‌ରେ କାଢ଼ି ଆଉ ଥରେ ଗିରଫ୍ କରି ବେଶୀ ମାଡ଼ ଦେବା ପାଇଁ ସେମାନେ ଯୋଜନା ମଧ କରୁଥିଲେ । ଏସ୍.ପି ଆସି ମୋତେ କହିଲେ , ତୋତେ ଆମେ ବେଲ୍‌ରେ ନେବୁ , ଲୋନ୍ କରିଦେବୁ । ନକ୍ସଲ ବିରୁଦ୍ଧରେ ତୁ ପୋଲିସକୁ ସାହାଯ୍ୟ କର । ଏସବୁ ମୋର କାମ ନୁହେଁ , ମୁଁ କରିବି ନାହିଁ ବୋଲି କହିଲି । ତୁମେ ତ ପୋଲିସ ମାନେ ଅଛ , ନକ୍ସଲଙ୍କୁ ଧର ବୋଲି କହିଲି । ଏହିପରି କହିବା ପରେ ଏସ୍.ପି , ଆର୍-ଉଦୟଗିରି ଓ.ଆଇ.ସି ରାଗି କରି ମୋର ସମସ୍ତ ଜେଲ୍ ସାକ୍ଷାତକାର ବନ୍ଦ କରିଦେଲେ । ମୋର ବୁଢ଼ୀ ମାଆ ଓ ସ୍ତ୍ରୀ କେତେ ଥର ସାକ୍ଷାତକାର ପାଇଁ ଆସି ଦେଖା ହୋଇପାରିଲେ ନାହିଁ । ମୋର ଏକ ସଂପର୍କୀୟ ଭାଇ ମୋ ବେଲ୍ ପାଇଁ ବୁଲାବୁଲି କରୁଥିବାରୁ ଏସ୍‌ପି ତାକୁ ଧମକ ଦେଲା ।

**ଜେଲ ମଧରେ ବନ୍ଦୀଙ୍କୁ ଶୋଷଣ**

ଜେଲ୍ ମଧରେ ବନ୍ଦୀମାନଙ୍କୁ ଛେଳିମେଣ୍ଢାଙ୍କୁ ଗୁହାଳରେ ପୁରାଇଲା ପରି , ୨୦/୩୦ ଲୋକଙ୍କୁ ଗୋଟେ ଘରେ ପୂରାଇ ରଖୁଛନ୍ତି । ପାଣିର ଅଭାବ , ଝାଡ଼ା ଯିବାର ଅସୁବିଧା । ବନ୍ଦୀମାନଙ୍କ ପାଇଁ ଔଷଧର ସୁବିଧା ନାହିଁ । ଗରମରେ ସେମାନେ ହଇରାଣ ହେଉଛନ୍ତି । ଜେଲ୍ ନିୟମରେ ଏମିତି ନଥିଲେ ମଧ , ଦିନ ୧୨ ରୁ ୩ଟା ଯାଏଁ ମଧ ଘରେ ପୂରାଇ ଚାବି ପକାଇ ରଖୁଛନ୍ତି । ଏଇଟା ଆର୍-ଉଦୟଗିରି ଜେଲ୍‌ରେ ଚାଲିଛି । ଡାଲି ଓ ତରକାରି ନାଁକୁ ମାତ୍ର ଦେଉଛନ୍ତି । ପାଣିଆ ଡାଲି ଦେଉଛନ୍ତି । ବେଶି ଖାଦ୍ୟ ଚୋରି ଲୁଟିକରି ଅଫିସରମାନେ ଖାଇ ଯାଉଛନ୍ତି ।

ଆର୍-ଉଦୟଗିରି/ପାରଳାଖେମୁଣ୍ଡି ଜେଲ୍‌ରେ ବନ୍ଦୀଙ୍କର ମାଆ ବାପା ବା ସଂପର୍କୀୟମାନେ ଆସି ଦେଖା କଲେ , ମନ୍ଦିର ନାଁରେ ସେମାନଙ୍କ ଠାରୁ ଜଣେ ବନ୍ଦୀ ପିଛା ୧୦ ଟଙ୍କା ଠାରୁ ୧୫ ଟଙ୍କା ଯାଏଁ ବେନିୟମ ଭାବେ ଗେଟ୍‌ରେ ନେଉଛନ୍ତି । ଏହିପରି ଜେଲ୍ କର୍ତ୍ତୃପକ୍ଷ ଗେଟ୍‌ରୁ ଶହଶହ ଟଙ୍କା ରୋଜଗାର କରୁଛନ୍ତି । ବେଲ୍‌ବଣ୍ଡ ପାଇଁ ମଧ୍ୟ ୨୦/୩୦ ଟଙ୍କା ଲାଂଚ ନନେଲେ ସନ୍ତକ ଦେବୁ ନାହିଁ ବୋଲି ଜେଲ କର୍ତ୍ତୃପକ୍ଷ କହୁଛନ୍ତି ।

ରାଜନୈତିକ ବନ୍ଦୀଙ୍କୁ ଚୋର ସହ ସମାନ କରି ଦେଖୁଛନ୍ତି । ପଢ଼ିବା ପାଇଁ ବହି , ଖବର କାଗଜ ଆଦି ମିଳୁନାହିଁ । ମୁଁ ମଧ୍ୟ ଏଭଳି ଅସୁବିଧା ମଧ୍ୟରେ ଜେଲ୍‌ରେ ରହି ଆସିଛି । କେତେକ ବନ୍ଦୀ ପେଟ ପୁରୁ ନାହିଁ ବୋଲି ଅଭିଯୋଗ ମଧ୍ୟ କରୁଛନ୍ତି ।

**କୋର୍ଟରେ ଶୋଷଣ**

କୋର୍ଟରେ ଓକିଲମାନେ ଗରିବ ଲୋକଙ୍କୁ ମନଇଚ୍ଛା ଶୋଷଣ କରୁଛନ୍ତି । ମାମୁଲି କେସ୍ ପାଇଁ ହଜାର ହଜାର ଟଙ୍କା ନେଉଛନ୍ତି । ତା'ପରେ ବାଇଦାକୁ ବାଇଦା ଶହ ଶହ ଟଙ୍କା ନେଉଛନ୍ତି । କୋର୍ଟର ଏସ୍.ଆଇ , ଲୋକ ଦେଖି ପଚାଶ ଶହେ ନନେଲେ ସନ୍ତକଟିଏ ଦେଉନାହାନ୍ତି । ତେଣୁ ଲୋକ ବେଲ୍ ପାଇବାରେ ଅସୁବିଧା ଭୋଗୁଛନ୍ତି । କାଗଜ ଖୋଜିବା ନାଁରେ , ଟିକିଏ କାମଥିଲେ ବି , ଯାହା ବି ହେଉ ବିନା ପଇସାରେ କୋର୍ଟରେ କିଛି କାମ ଚାଲେନା । ମୁଁ ମଧ୍ୟ ଏହି ପରିସ୍ଥିତିରେ ହଜାର ହଜାର ଟଙ୍କା ଖର୍ଚ୍ଚାନ୍ତ ହୋଇ , ମୋର ଘରର ବଳଦ ଓ କଂସା ଗିନା ବିକା ବନ୍ଧା କରି , ଋଣ ବାଡ଼ି କରି ବେଲ୍ ହେବା ପାଇଁ ବାଧ ହେଲି । ସରକାରଙ୍କର ଏଭଳି ମିଛ କେସ୍ ଯୋଗୁଁ ମୋ ପରି ବହୁ ଗରିବ ଲୋକ ସର୍ବସ୍ୱାନ୍ତ ହେଉଛନ୍ତି ।

ଏହା ଭିନ୍ନ ମୁଁ ଜେଲ୍‌ରେ ଥିଲାବେଳେ , ଗାଁର କେତେକ ଦୁଷ୍ଟ ଅଣ-ଆଦିବାସୀ ଲୋକ ମୋର ବିଲର ଧାନ କାଟିନେଲେ । ଏ ବିଷୟରେ ମୁଁ ଜେଲ୍‌ରୁ ଥାଇ ଦରଖାସ୍ତ ଆକାରରେ ଜଣାଇଲେ ମଧ୍ୟ , ଥାନା ଓ କୋର୍ଟ ତରଫରୁ କୌଣସି ପଦକ୍ଷେପ ନେଲେ ନାହିଁ । ମିଛ କହିବା ଲୋକଙ୍କର ଜିତାପଟ ହେଲା । ମୋର ଗୁହାରି ପାଣିରେ ଗାର ହେଲା ।

ବନ୍ଧୁଗଣ ,

ମୁଁ ଏହିପରି ପରିସ୍ଥିତି ମଧ୍ୟରେ ଷୋଳମାସ ବିନା ଦୋଷରେ ଜେଲ୍‌ରେ ରହିବା ପରେ ଜାମିନିରେ ଆସିଲି । ଆନ୍ଧ୍ର ସରକାର ମୋ ଉପରେ ପକାଇଥିବା ଆନ୍ଧ୍ର ପବ୍ଲିକ୍ ସିକ୍ୟୁରିଟି ଆକ୍ଟର ମିଛ କେସ୍ ପାଇଁ ତ ବାପା ମାଆ ନାହିଁ । ଚନ୍ଦ୍ରବାବୁ ନାଇଡୁ ସରକାର

ଶାସନରେ ଥିଲେ , ଏବେ ବି ମୁଁ ଜେଲ୍‌ରେ ଥାଆନ୍ତି ନା କ'ଣ ? ଏହି କଳା ଆଇନ୍ ଜରିଆରେ କାହାକୁ ବର୍ଷେ ତ , କାହାକୁ ଆଠ ବର୍ଷ ବିନା ବିଚାରରେ ସେମାନେ ରଖିପାରନ୍ତି । ଏହି କେସ୍‌ରୁ ମୁକୁଳିବା ପାଇଁ ପୁଣିଥରେ ମୋତେ ଦୁଇମାସ ପନ୍ଦର ଦିନ ଆନ୍ଧ୍ର ଜେଲ୍‌ରେ ରହିବାକୁ ହେଲା ।

ସେ ଯାହା ହେଉ , ମୋର ଏହି ଜେଲ୍ ଜୀବନ , ଦୁଃଖ କାହାଣୀ ପଢ଼ିବା ବେଳେ , ଅନ୍ୟ ଗରିବ ଲୋକଙ୍କ ଦୁଃଖ କାହାଣୀ ଆପଣମାନେ ଅନୁଭବ କରିପାରୁଥିବେ ବୋଲି ମୋର ଆଶା । ଆନ୍ଧ୍ର ଜେଲ୍‌ରେ ମୋ ପରି ବହୁ ଓଡ଼ିଶାର ଲୋକ ଏବେ ବି ଅଛନ୍ତି । କେତେ ଓଡ଼ିଶା ଲୋକ ଆନ୍ଧ୍ର ସରକାର ଦ୍ୱାରା ଗିରଫ୍ ହୋଇ କୋର୍ଟକୁ ଧାଉଁଛନ୍ତି । ରାୟଗଡ଼ା ଜିଲ୍ଲା ମୁକୁନ୍ଦପୁରର କଣ୍ଡାଗିରି ଶ୍ରୀନୁକୁ ରାୟଗଡ଼ାରୁ ଗିରଫ୍ କରି ଆନ୍ଧ୍ର ପୋଲିସ୍ ନେଇଯାଇଛନ୍ତି । ଗଜପତି ଜିଲ୍ଲା ପାରଳାଖେମୁଣ୍ଡିର କେ.ରମେଶ , ଏସ୍ ଶ୍ରୀରାମୁଲୁ ଆଦିଙ୍କୁ ରାୟଗଡ଼ା ଜିଲ୍ଲା କୋଲନରା ବ୍ଲକ ପାଣ୍ଡ୍ରାତାଲା ଗାଁରୁ ଆନ୍ଧ୍ର ପୋଲିସ୍ ଗିରଫ୍ କରି ନେଇଯାଇଛନ୍ତି । କୋଲନରା ବ୍ଲକ କଣ୍ଡାଗିରି ରାଜା ରାଓ ମଧ ଆନ୍ଧ୍ର ଜେଲ୍‌ରେ ଏହିପରି ଥିଲା । ସେ ପୋଢ଼ ଚରାଉଥିବା ବେଳେ ଆନ୍ଧ୍ର ପୋଲିସ୍ ତାକୁ ଧରି ନେଇଥିଲେ ।

ଓଡ଼ିଶାରେ ଆର୍-ଉଦୟଗିରି , ଗୁଣୁପୁର ଓ ପାରଳାଖେମୁଣ୍ଡି ଜେଲ୍‌ରେ ବହୁ ନିରୀହ କୁଇ , ସରା ଓ ଅନ୍ୟାନ୍ୟ ଆଦିବାସୀ ଦଳିତ ଲୋକ ସରକାରଙ୍କ ମିଛ ନକ୍ସଲ କେଶ୍‌ରେ ଦୁଃଖ ପାଉଛନ୍ତି । ଆମ୍ଭେମାନେ ସମସ୍ତେ ସରକାରଙ୍କର ଏହିଭଳି ପୋଲିସ୍ ଦମନ ଓ ନିର୍ଯ୍ୟାତନା ବିରୁଦ୍ଧରେ ସ୍ୱର ଉଠାଇବା ଉଚିତ ।



**ଦାସୁଙ୍କ ଉପରେ ଲିଖିତ ଗଳ୍ପ**

# କାନ୍ ଖୁଲ୍‌କର୍ ଶୁନ୍ ସର୍କାର୍

*- ଭୀମ ପୃଷ୍ଟି*

ଗୁଡୁରିପଙ୍କାର ସର୍କାରମାନଙ୍କ କଥା କୁହନ୍ତୁ ନାହିଁ ! ଏଠି ଗାଁ ଚୌକିଦାର ହେଉଛି ସର୍କାର । ଅକାରଣରେ କାରଣ ଦେଖାଇ ଦେଖାଏ ତା'ହାକିମାତି ।

-ତୁମ ଗାଁ ଦାଣ୍ଡ କାହିଁକି କାଦୁଅ ହେଲା । ଗାଁ ଲୋକେ ଦି ଶହ ଟଙ୍କା ବାନ୍ଧ ।

-ତୁମେ ଦି' ଭାଇ ମଦପିଇ କାହିଁକି ଲଢେଇ ଲାଗୁଛ ?

ଥାନା ପାଇଁ ପଚାଶ ଟଙ୍କା ବାନ୍ଧ ।

ଫରେଷ୍ଟ ଗାର୍ଡ ଆସିବ । ସେ ଆରେକ ସର୍କାର ।

- ଗାଈ ପୋଢ଼ ରଖିଛ । ସେମାନ ଜଙ୍ଗଲ ନଷ୍ଟ କରୁଛନ୍ତି । ଗାଈ , ପୋଢ଼ ପିଛା ଟଙ୍କାଏ , ଛେଳି ପାଇଁ ପଚାଶ ପଇସା ବାନ୍ଧ । ନଚେତ ବାନ୍ଧି ନେବି ।

ୱାର୍ଡମେମ୍ବର ଘରେ ଆଡ୍ଡା ମାରନ୍ତି ତିନି ସର୍କାର । କୁମୁଟି ସର୍କାର , ମହାଜନ ସର୍କାର , କୁଜିନେତା ସର୍କାର । ୱାର୍ଡମେମ୍ବର ଘରେ କୁକୁଡ଼ା ପୋଡ଼ା , ମହୁଲିପିଆ ,ଭାଗ ବଂଟରା ।

ୱାର୍ଡମେମ୍ବର ବି ମହା ସର୍କାର ।

- ବାର୍ଦ୍ଧକ୍ୟ ଭତା କରାଇଦେବି , ଟଙ୍କା ଦିଅ ।

- ବିପିଏଲ୍ ପାଇଁ କାଗଜ କିଣା ହେବ , ମୋହର ଲାଗିବ, ଟଙ୍କା ଦିଅ ।

ଏତେଗୁଡ଼ାଏ ସର୍କାର ଭିତରେ ମଣିଷ ଛୁଆ ଜନ୍ମ ନିଏ । ପିଲାଟି ଦିନରୁ ଶୁଣେ ସେହି ଗୋଟେ କାହାଣୀ - ସର୍କାର ମାନଙ୍କ କାହାଣୀ । ଦେଖେ , ଶୀତରେ ଗରମ ପୋଷାକ ପିନ୍ଧି , ଖରାରେ ଧଳା ପୋଷାକ ପିନ୍ଧି , ବର୍ଷାରେ ରେନିକୋଟ୍ ପିନ୍ଧି କମାନ୍‌ରେ ଆସୁଥିବା ଭଳିକି ଭଳି ସର୍କାରଙ୍କ ଦିମାକ୍ ।

ସେମାନେ ଚିତ୍କାର କରନ୍ତି ।

ସେମାନେ ଧମକ ଦିଅନ୍ତି ।

ସେମାନେ ଲୁଟି ନିଅନ୍ତି ।

ସେମାନେ ବାନ୍ଧି ନିଅନ୍ତି ।

-ସର୍କାର ଆସିଲେ ଗାଁରେ ତାଟି କବାଟ ପଡ଼ିଯାଏ ।

-ସର୍କାରମାନେ ସ୍କୁଲ ବନ୍ଦ କରିଦିଅନ୍ତି । ମାଷ୍ଟ୍ରେଙ୍କୁ କୁହନ୍ତି

- ଦରମାରୁ ଅଧେ ଦେଇଯା' । ଯା' ଘରେ ବସ୍ ।

- ରାସ୍ତାଘାଟ କିଛି କରିବା ଦର୍କାର ନାହିଁ । ଆମକୁ କିଛି ଦେଇ ଯା' । ବିଲ୍ ନେଇ ଯା ।

କଂଟ୍ରାକ୍ଟରକୁ ସର୍କାରମାନେ ବିଦା କରି ଦିଅନ୍ତି ।

ବିଜୁଳିବାଲାକୁ କୁହନ୍ତି

- ଖୁଂଟ କେବଳ ପୋତି ପୋତି ଯା' । ବିଜୁଳି ତାର ବିକି ଆମକୁ ଅଧେ ଦେଇଯା ।

ଏଠି ଡାକ୍ତର ଫାକ୍ତର ନର୍ସ କି କମ୍ପାଉଣ୍ଡର ଦରକାର ନାହିଁ । ଏଠି ଚେରମୂଳି , ଗୁଣିଗାରେଡ଼ି ଉପରେ ଭରସା ।

-ତୁମ ଦରମାରୁ କିଛି ଦେଇଯା' । ଯାଇ ଘରେ ବସ । ସେଠି ଫିସ୍ ନେଇ ରୋଗୀ ଦେଖ ।

- ଯଦି ପାଣି ପାଇଁ ଟିଉବୱେଲ୍ ବସିବ । ବସୁ । ପିଇବା ପାଣି ଯେପରି ଟୋପେ ନ ବାହାରିବ ବ୍ୟବସ୍ଥା କରିଯା' ।

- କେହି ମଦ ରାନ୍ଧି ପାରିବନି । କୁମୁଟି , ଶୁଣ୍ଡିଙ୍କୁ ଲାଇସେନସ୍ ଦିଆ ହୋଇଛି । ସମସ୍ତେ ତାଙ୍କ ଠାରୁ କିଣି କରି ପିଅ

ଭୟ ଦେଖାଇ ଚାଲିଯାଏ ଅବକାରୀ ସର୍କାର ।

ପିଲାଟି ଦିନରୁ ଏ ସର୍କାରମାନଙ୍କୁ ଦେଖି ଆସୁଛି ଦାସୁ । ଭଳିକି ଭଳି ସର୍କାର ଭଳିକି ଭଳି ନିୟମ । ଦାସୁ ଆଶ୍ଚର୍ଯ୍ୟ ହୁଏ । ଏଠି ଏତେ ସର୍କାର ! ସର୍କାର ସର୍କାର ଭିତରେ କେବେ ଲଢ଼େଇ ହୁଏନା । ସେମାନଙ୍କ ଭିତରେ ହସଖୁସି । ଭାଗ ବଂଟାର ଭିତରେ ଭିତରେ ସେମାନେ ମେଳି ।

ଆହୁରି ଭୟ କରି ରୁହ ।

ଆହୁରି ବୋକା ହୁଅ ।

ଦେଶ ଦୁନିଆଁ ଉପରେ ତୁମର ଜାଣିବା କ'ଣ ଦର୍କାର , ସେମିତି ଥାଅ ଆଦିମ । ସେମିତି ପଶୁପରି ଜୀବନ ଘୁଷୁରି ଘୁଷୁରି ମରି ଡୁମା ହୋଇଯାଅ ।

ସର୍କାର ମାନଙ୍କର ମତଲବ ସବୁ ଦାସୁ ଧୀରେ ବୁଝିପାରେ । ପାଠ ଦି'ଅକ୍ଷର ପଢ଼ିବା ପାଇଁ ପାହାଡ଼ ଡଙ୍ଗର ଡେ଼ଇଁ ପାଖ ଗାଁକୁ ଧାଏଁ । ସପ୍ତମ ଶ୍ରେଣୀ ପାଶ୍ କରେ । କେବଳ ଲଢ଼େଇ କରି ପଢ଼େ , ଜିଦିକରି ଶିଖେ । ଦାସୁ ଘରେ ମଦରେ ବାପ ବରବାଦ । ମା'ର ବେମାରି । ଅଭାବର ପଚାସଢ଼ା ଭିତରେ ସଢୁଥାଏ ତା ପରିବାର । ଦେଖୁଥାଏ

ଗୁଡୁରିପଙ୍କାର ଘରେ ଘରେ ଅଶିକ୍ଷା , କୁସଂସ୍କାର । ଭୟ କେବଳ ଭୟ । ଘର ର ଏ ପରିସ୍ଥିତି , ଗାଁର ଏ ଅବସ୍ଥା , ଦାସୁ ଆନେମନା ହୁଏ , ଗାଁରୁ ହଟିଯାଇ ଡଙ୍ଗର ଉପରେ ବସେ ଗୋଟେ ମୁଣ୍ଡିଆରେ । ତା'ଛାତିର କଷ୍ଟ ଆଉ ଗାଁ ଲୋକଙ୍କ କଷ୍ଟ ଏକ ହୁଏ । ତା' କୁଟୁମ୍ବମାନଙ୍କ ପାଇଁ ତା'କୁଇ ସରାମାନଙ୍କ ପାଇଁ ସେ ଆବେଗରେ ବୁଡ଼େ । ଗୀତ ଲେଖେ । ଗାଁର ତା'ର ସାଙ୍ଗସାଥୀ , ଧାଂଡ଼ା ଧାଂଡ଼ିକୁ ଏକଜୁଟ କରି ତିଆରି କରେ ଗୋଟେ ଗାୟକ ଦଳ । କେଉଁ ଗାଁରେ ପର୍ବ ହେଲେ , ବହାଘର , ଝିଅ ବିଦା ହେଲା , ସେଠି ଦଳକ ପହଂଚି ନାଚଗୀତ ଆରମ୍ଭ କରନ୍ତି । ଦାସୁ ଯେମିତି ଗୀତ ଲେଖେ , ସେମିତି ବି ଗୀତ ଗାଏ । ତା' ସୁର ବି ସୁରିଲା । ଯେଉଁଠି ଗୀତ ନାଚ , ଚାଙ୍ଗୁ , ଘୁଙ୍ଗୁରର ଲହରିଆ ଆୱାଜ , ଦାସୁ ଗୀତର ମୁଖୁଡ଼ା ଲହରାଏ , ଝୁମିଉଠେ ସାରାଟା ସାରା ଜଙ୍ଗଲ୍ ।

ଦାସୁ ଦେଖେ , ଦିନକୁ ଦିନ ବାହାଘର , ଝିଅ ବିଦା ଗୀତ ପ୍ରତି କୁଇମାନଙ୍କ ଆଗ୍ରହ କମି ଚାଲିଛି । ଭାବେ - ମୋ କୁଇଗୀତ , କୁଇ ଭାଷାର ପହିଲା ନମ୍ବର ଶତ୍ରୁ ହେଉଛନ୍ତି ମୋ ଲୋକ । ଯେଉଁମାନେ ଡୁବନମାରି ଖ୍ରୀଷ୍ଟିୟାନ ହେଉଛନ୍ତି । ଚର୍ଚ୍ଚର ଫାଦର , ସିଷ୍ଟରମାନେ ସେମାନଙ୍କୁ କହୁଛନ୍ତି - ଆମ ଧର୍ମରେ ତୁମ ନାଚଗୀତ , କୁକୁଡ଼ା ବଳି ଚଳିବ ନାହିଁ । ତୁମ ନାଚଗୀତ କଲେ ଆମ ଠାକୁର ଯୀଶୁ ରାଗିବେ । ଆଉ ଆମରି ଲୋକ ତ ହିନ୍ଦୁଙ୍କ ପରି ପଇତା ପକେଇଲେଣି । ହିନ୍ଦୁ ଠାକୁରଙ୍କ ଭଜନ କ୍ୟାସେଟ ଆଣି ଗାଁରେ ବଜାଉଛନ୍ତି । ହିନ୍ଦୁ ପର୍ବପର୍ବାଣି କରି ମହୁଲି ପିଇ ଫିଲ୍ମଗୀତ ତାଳରେ ନାଚୁଛନ୍ତି ।

ଏ ସବୁ କଥା ସହିପାରେନା ଦାସୁ । ଦାସୁ ତା ଗାୟନ ଦଳ ସାଥୀମାନଙ୍କୁ ଧରି ଗାଁ କୁ ଗାଁ ବୁଝାନ୍ତି - ତୁମେ ହିନ୍ଦୁ ହୁଅ କି ଖ୍ରୀଷ୍ଟିୟାନ ହୁଅ , ନିଜ ଭାଷା , ନିଜ ଗୀତକୁ ବୁଡାଇ ଦିଅନା । ଆମେ ଆଦିବାସୀ । ଆମର ଆଦି ଧର୍ମ । କେବଳ ସାହୁକାର ଓ ସର୍କାର ଭୋଟ ପାଇବା ପାଇଁ ଆମକୁ ହିନ୍ଦୁ ଖ୍ରୀଷ୍ଟିୟାନରେ ଭାଗ କରୁଛନ୍ତି । ଦାସୁ ବି ଦେଖେ , ତାରି ଗାଁ ଗୁଡ୍‌ରିପଙ୍କାରେ କୁସଂସ୍କାରର ଅଳନ୍ଧୁ । ତା' ଗାୟକ ଦଳ ସହ ସେ ସେହି ଅଳିଆ ସଫା କରିବା କାର୍ଯ୍ୟରେ ବାହାରି ପଡ଼ନ୍ତି । ଦାସୁ ଗାଁ ଲୋକଙ୍କୁ ବୁଝାଏ - ବାଘ ଦେବତା କେବଳ କ'ଣ ଆଗ ଗରିବ ଲୋକଙ୍କୁ ଖାଇବ ? ସାହୁକାର ଘରେ କାହିଁକି ଦେବତା ଲାଗେନା । ଦେବତା କ'ଣ ଗରିବ ଚିହ୍ନି ଚିହ୍ନି ତା'ର ସାଙ୍ଗରେ ଲାଗେ ? ଏସବୁ ସେହିମାନେ ଫାନ୍ଦି ଆମ ଭିତରେ ହଣାହଣି ଲଗେଇ ଦେଇଛନ୍ତି । ତୁମକୁ ଜର ହୋଇଛି , କ୍ଲୋରକୁଇନ୍ ଖାଅ । ଗୁଣିଆ ଗାଁକୁ ଡାକନା କି କୁକୁଡ଼ା ବଳି ଦିଅନା ।

ଏହାରି ଉପରେ ବି ଦାସୁ ଗୀତ ଲେଖେ । ଯେଉଁ ଗାଁକୁ ଯାଏ , ଗାୟନ ଦଳକୁ ନେଇଯାଏ । ଗୀତରେ ସମସ୍ତଙ୍କୁ ବଦଳାଇବା ପାଇଁ ସ୍ୱର ବାନ୍ଧେ ।

ମଦ ପିଇ ଗାଁକୁ ଗାଁ ଲୋକ ବରବାଦ୍ ହେବାଟା ଦାସୁକୁ ବ୍ୟସ୍ତ କରିପକାଏ । ମଦ ପିଇ ପିଇ ତା' ବାପ ମରିସାରିଥାଏ । ମଦ ପିଇବା ପାଇଁ ସାହୁକାର ଘରେ ନିଜକୁ ବନ୍ଧା ପକେଇ ଦିଅନ୍ତି ଲୋକେ । କୁମୁଟି , ଶୁଣ୍ଡି ମଦବେପାରୀଙ୍କ ବେପାର ବଢୁଥାଏ । ଗାଁରେ ଗାଁରେ ଶୁଭେ ମରିଗଲା ମରିଗଲାର କାନ୍ଦ ବୋବାଳି । ଏହି ନଷ୍ଟ କଷ୍ଟରେ ଚେଇଁ ଉଠେ ଦାସୁ । ମଦ ବିରୁଦ୍ଧରେ ଲେଖି ବସେ ଗୀତ ।

ମଦପିଇ ଲୋକେ ତୁମେ ବୁଡ଼ିଲ
ବିକିଲ ସୁନାରୂପା
ବିକିଲ ଜମିପଦର
ଅଜା ଅମଳର ,
ବନ୍ଧକ ଦେଲ , ବୁଡ଼ିଲ ।
ଯେ' ମଦ ପିଇଲା
ମାଇପ ତା'ର କୁଲିଭୂତିରେ ଗଲା ।
ଯେ ମଦ ପିଇଲା
ମାଇପଠୁ ମଜୁରୀ ଛଡ଼େଇ ନେଲା ,
ସିଏ ମାତାଲ ହେଲା ।
ଯେ ମଦ ପିଇଲା
ମାଡ଼ରେ ତା' ମାଇପର ଜୀବନ ଗଲା ।
ଯେ ମଦ ପିଇଲା
ସାଉକାର ଘରେ ସିଏ ଗୋତି ଖଟିଲା ।

ଦାସୁ ଯେତେବେଳେ ତା' ଗାୟନଦଳ ସହ ଏ ବିରୋଧୀ ଗୀତସବୁ ଗାଏ , ଗୋଟେ ପୁରୁଣା ବଣୁଆ ପରମ୍ପରା ଉପରେ ତା'ଗୀତ କୁହୁକ ପ୍ରତିବାଦ ପରି ଲୋକଙ୍କ ଛାତି ଛୁଏଁ ।

ଦାସୁ ଦେଖୁଥାଏ , ତା'ରି ଗାଁର ତା' ସାଙ୍ଗସାଥୀ ଧାଂଡ଼ା ମାନେ ବାହା ହେଉଛନ୍ତି ମାନେ , ଧାଂଡ଼ିକୁ କେନ୍ଦା (ଯୌତୁକ) ଦେବା ନିହାତି ଜରୁରୀ । କେନ୍ଦାରେ ଗାଈ , ବଳଦ , କଂସା ବାସନ ଯୋଗାଡ଼ କରିବା ପାଇଁ ଧାଂଡ଼ା ତା' ଜମିବନ୍ଧା ପକାଉଛି ।

ସେ ବୁଝାଇଲା

- ଯୌତୁକରେ ଗାଈ , ବଳଦ , କଂସାବାସନ ଉଠେଇ ଦିଅ । ପୁଅବାଲା ଝିଅ ବାଲାଙ୍କୁ କିଛି ଟଙ୍କା ଯୌତୁକ ଦିଅନ୍ତୁ । ଦାସୁ ଦେଖିଲା ଏଥିରେ ବି ଅସୁବିଧା । ଧାଂଡ଼ା କେନ୍ଦା ଦେବା ପାଇଁ ଟଙ୍କା ଯୋଗାଡ଼ କରିପାରୁନି । ସାହୁକାର ପାଖରେ ଜମି ବନ୍ଧକ

ଦେଉଛି । ବାହାଘର ପରେ ସେମାନେ ଓପାସ ଭୋକରେ ରହୁଛନ୍ତି । ଦାଦନ ହୋଇ ଗାଁ ଛାଡୁଛନ୍ତି ।

ଦାସୁ ଧାଂଡ଼ା ଧାଂଡ଼ିକୁ ବୁଝେଇଲା

- ଲଭ୍ ମ୍ୟାରେଜ କର । ଲଭ ମ୍ୟାରେଜରେ କିଏ କାହାକୁ କେନ୍ଦା ଦିଏ ନାହିଁ କି ନିଏ ନାହିଁ ।

ଏ ପାଇଁ ଦାସୁ ବି ଗୀତ ଲେଖିଲା । ତା' ଗୀତରେ ଯେପରି ଯାଦୁ ଥିଲା । ସେମାନେ ଭାବୁଥିଲେ ।

- ଦାସୁ ଯାହା ଲେଖୁଛି , ଯାହା ଗାଉଛି ଠିକ କଥା ତ ! ଧୀରେ ଧୀରେ ଗୋଟେ ଗୋଟେ ରାଜିରୁଜା ବାହାଘର ସେଠି ଚାଲିଲା ।

ଯେଉଁ ଦିନ ଦାସୁ ଫୁଲବାଣୀ ଆଡର କବି ହେମନ୍ତ ନାଏକ ର 'କୁଇ ଦୀନା ପୁଙ୍ଗା' ଗୀତ୍ ବହି ପାଇଲା , ବାହାଘର- ଝିଅବିଦା ଓ ପର୍ବ ପର୍ବାଣୀ ପାଇଁ ଗୀତ ଲେଖୁଥିବା ଦାସୁକୁ ନିଜର ପୁରୁଣା ଗୀତସବୁ ଲାଗିଲା ବେସୁରା । ତା' ମୂଲକରେ ଲୋକଙ୍କ ଅବସ୍ଥା , ଗାଁର ପରିସ୍ଥିତି , ସର୍କାରଙ୍କ ଦମନ ଆଦିକୁ ନେଇ ଦାସୁ ବଦଳେଇ ଚାଲିଲା ତା ଗୀତର ଅନ୍ତରା । ପତ୍ର ରଙ୍ଗର ଲୁଙ୍ଗିକୁ କଛାମାରି , ତା' ଭିତରେ ବେନିୟନ ଇନ୍ କରି , ଦାସୁ ଯେଉଁଦିନ ତା' ନୂଆ ଲେଖିଥିବା 'ରଣ୍ଡାଆନା' ଗୀତ ଗାଇବା ପାଇଁ ଛାତି ପାଖକୁ ଟୋକି ଧରିଲା ଚାଙ୍ଗୁ , ତା' ଗାୟକ ଦଳ ତା' ସ୍ୱରରେ ସ୍ୱର ଧରିଲେ -

ଆମ କୁଇ ଭାଷା ଆଉ ଏ କୁଇ ମୂଲକ
ତା'ର ରକ୍ଷା ପାଇଁ ଆସ ହେବା ଆଜି ଏକ ।
ରାୟଗଡ଼ା , ଗଜପତି , ଫୁଲବାଣୀ ଲୋକ
ଆସରେ ସଭିଏଁ , ଆସ ହେବା ଆମେ ଏକ ।
ଆସ ଆମେ କୁଇଲୋକ ଗଢ଼ିବା ଯେ ସଂଘ
ଆବା ଆୟା ପୁଅ ଝିଅ ଦିଅ ଏଥି ଯୋଗ ।
ଆମେ ନ ପାଇବା ଲୋକ , ଆସ ହେବା ଏକ
ଜଙ୍ଗଲ ଉପରେ ଆମ ଜନ୍ମଗତ ହକ ।
ସେଥିପାଇଁ ଚାଲ ଆଜି ଉଠାଇବା ହାତ
ଆଉ କେ ମାରିବନି ଆମ ପେଟେ ଲାତ ।

କୁଇ ଲୋକମାନଙ୍କ ପାଇଁ ଆହୁରି ଗରିବ , ଆହୁରି ସାହସୀ ହେବାକୁ ନିଆଁ ଭିତରକୁ ଓହ୍ଲାଇ ଯିବାକୁ ଦାସୁ ତୟାର ।

ଦାସୁର ଏ ଗୀତ ଲେଖା , ଗୀତ ଗାଇବା , ଗୀତ ପାଇଁ ଏତେ ମେଳି ।

ତା' ଗୀତ ପାଇଁ ଶୁଣି ମହାଜନଙ୍କ ମଦ ବେପାର ମାନ୍ଦା ।

ତା' ଗୀତ ପାଇଁ ଗାଁ ଲୋକ ଚାଲାଖ ।

ତା' ଗୀତ ପାଇଁ ଫରେଷ୍ଟ ଗାର୍ଡ଼ଙ୍କୁ ଲୋକେ ଦେଉଥିଲେ ଜବାବ୍ ।

ତା' ଗୀତ ପାଇଁ ଚୌକିଦାର ସର୍କାରର ମୁହଁ ବନ୍ଦ । ଚକା ବନ୍ଦ । ଦାସୁର ଗୀତରେ ଯେ କାଳିସୀ ପରି ନାଚିଥିଲେ ସବୁ ସର୍କାର । ମାଣ୍ଡିମେରା ଥାନା ସର୍କାରଙ୍କ ପାଖରେ ଏ ସର୍କାରଙ୍କ ଅଭିଯୋଗ ।

ମାଣ୍ଡିମେରା ଥାନା ସର୍କାର ଦାସୁକୁ ଥାନାକୁ ଡାକି ହାଂକିଲେ

- ଗୀତ ଲେଖା ବନ୍ଦ କର ।

- ଆଜି କହୁଛ ଗୀତ ଲେଖା ବନ୍ଦକର । କାଲି କହିବ କଥା କହିବା ବନ୍ଦ କର । ତା'ପର ଦିନ କହିବ ଗାଁ ଛାଡ଼ । ମୁଁ ଛାଡ଼ି ପାରିବି ?

ପିଲାଦିନରୁ ଦାସୁ ଦେଖୁଛି , ଏ ସର୍କାରମାନଙ୍କ ନାଲିଆଖି । ସେ ନାଲିଆଖିକୁ ସେ ଆଉ ଏବେ ଡରେନି । ସେ ଗୀତ ଲେଖୁଛି । ଲୋକେ ତା' ଗୀତରେ ବଦଳୁଛନ୍ତି । ସେ କ'ଣ ବନ୍ଧୁକ ଧରିଛି ଯେ , ତାକୁ ଏ ସର୍କାର ଏତେ ଡରୁଛନ୍ତି ?

- ଗୀତକୁ କଣ ସର୍କାର ସବୁ ଡରନ୍ତି ? ଦାସୁ ନିଜ ସରଳତାର ପ୍ରଶ୍ନ ନିଜକୁ କରେ , ତା'କୁ ହସ ମାଡ଼େ ।

ଆଖି ଆଗରେ ଦେଖୁଥାଏ , ତା'ରି ଗାଁ ଗୁଡ଼ରିପଙ୍କାରେ ପୋଲିସ୍ ସର୍କାର ଚଳାଏ ଲୁଟ୍‌ତରାଜ । ଥରକୁ ଥର ସେମାନେ ଆସନ୍ତି । ନିର୍ଦ୍ଧୁମ ଖରାବେଳେ , ନହେଲେ ରାତି ଅଧରେ । ଶୁଭେ ସେମାନଙ୍କ ହୁଇସିଲ୍ ।

- ମେଳିଆ ମାନଙ୍କୁ ଗାଁରେ ଲୁଚେଇ ରଖୁଛ ।

- ମେଳିଆ ମାନଙ୍କ କଥା ଶୁଣିଛ ।

ସେମାନଙ୍କ ଚିତିକାରରେ ଗୁଡୁରିପଙ୍କାର ଶାନ୍ତି ଭାଙ୍ଗୁଛି । ଥରକୁ ଥର ମେଳିଆ ଖାନ୍‌ତଲାସ ନାଁରେ ଆସୁଥିବେ । ଲୁଟେରା ପରି ହେଉଥିବେ । ଥରେ ତ ପାଉଲ ମାଝିର ଖାଉଟି କାର୍ଡ , ବାରଶହ ଟଙ୍କା ଛଡ଼େଇ ନେଲା ପୋଲିସ । ଥରେ ତ ବାଡ଼ିସା ମାଝିର ମରିଚ , ବିରି , କାନ୍ଦୁଲ , ଲୁଟିନେଲା ପୋଲିସ୍ । କାଶୁ ମଳିକର ଜହ୍ନା , ସୁଲତାନ ଘରୁ କାନ୍ଦୁଲ ଥରେ ବୋହି ନେଇଗଲା ପୋଲିସ୍ । ପ୍ରକାଶ ଘର ତାଲାଭାଙ୍ଗି ପଶିଲା । କିଛି ପାଇଲା ନାହିଁ , କେଉଁ ଡବା ଭିତରେ ପନ୍ଦର ଟଙ୍କା ଥିଲା । ଚୋରୀ କରିନେଇଗଲା ପୋଲିସ୍ । ମାକଲା ମାଝି ଘରେ କିଛି ନଥାଏ , ଖାଇବାକୁ ତା' ସ୍ତ୍ରୀ ଗୋରୁ ମାଂସ

ରାନ୍ଧିଥିଲା । ସେଥିରେ ହାତପୂରେଇ ଖାଇ ଶେଷ କରିଦେଲେ ପୋଲିସ ।

ଥରକୁ ଥର ଗୁଡୁରିପଙ୍କାରେ ସର୍କାରର ଚଡ଼କ ଚଢ଼ାଉରେ ଦାସୁର ଶ୍ୱାସ ପ୍ରଶ୍ୱାସ ପ୍ରଖର ଦ୍ରୁତ ଚାଲେ । ତା'ର ପ୍ରତିବାଦକୁ , ତା'ର ଘୃଣାକୁ , ତା'ର ଉତେଜନାକୁ ନେଇ ଗାରାଏ । ନିଆଁଝୁଲ ଭଳି ଝୁଲି ଲେଖେ ' ବେଢ଼େନ୍ଦା ସର୍କାର' ଗୀତଟା -

ଏ ଠକ ସର୍କାର , ପୁଲିସ ମାନେ ଚୋର
ଏ ରାଜା ଠକ , ମନ୍ତ୍ରୀ ଯେ ଟାଉଟର
ଗାଁକୁ ଗାଁ ଆସି ଚୋରାନ୍ତି ଡାବୁ
ନେଇଯାଆନ୍ତି ଆମ ପୋଷା କୁକୁଡ଼ା ସବୁ
ଯେତେ କୁହ ପଛକେ ଶୁଣନ୍ତି ନାହିଁ କିଛି
ରଙ୍କଣା କୁକୁର ସେ ବୁଝନ୍ତି ନାହିଁ କିଛି
ଦେଶରେ ଅଛୁ ଯେତେ ଗରିବ ଲୋକ
ଏ ଠକ ସର୍କାରକୁ ଜୁଟିଲେ ଯାଇଁ ମୁକ୍ତି
ଏ ଚୋର ପୋଲିସିକୁ ମାରିଲେ ଯାଇଁ ଗତି ।

ଯେଉଁଠି ମେଳି ; ଯେଉଁଠି କୁଇ , ସରା ଲୋକଙ୍କ ଗହଳି ; ସେଇଠି ଏ ବେ୍ଢ଼ନ୍ଦା ସର୍କାର ଗୀତଟା ଦାସୁଠୁ ଶୁଣିବାକୁ ଲୋକଙ୍କ ଡିମାଣ୍ଡ ଆସେ । ତାଙ୍ଗୁ ତାଳରେ , କାଉଁରିଆ କାଠ ପରି ଦାସୁ ତା' ଗରମ ନିଶ୍ୱାସ ର ଗୀତର ସ୍ୱରକୁ ଟିକେ ତେଜ କରେ । ବେଢ଼ନ୍ଦା ସର୍କାର , ଗୀତ ତାଳରେ ଶୁଣିବା ଲୋକର ହାତ ଆପଣା ଛାଏଁ ଉପରକୁ ଉଠେ । ଉଠେ , ହାତରେ ଧରିଥିବା ଧନୁତୀର , ଫାର୍ସା , ଲାଠି କି ବଂଶୀ ।

ଆଖି ଖୋଲା କରି ଦାସୁ ଗୀତ ଫାନ୍ଦେ ।
କୁଇ ଲୋକ ଆଖି ଫିଟାଇ ଚାହାନ୍ତି ।
ସର୍କାରସବୁ ଆତଙ୍କରେ ଆଖି ବନ୍ଦ କରି ଦିଅନ୍ତି ।
ନିଜ ଲୋକ ଭଲରେ , ଟିକେ ମଣିଷ ପରି ବଂଚିବା ପାଇଁ ଗୀତର ହତିଆର ପଜେଇ ତହକ ନିଆଁରେ ଡେଇଁ ଚାଲିଥାଏ ଦାସୁ ।
ଶୁଣ୍ , ଶୁଣ୍ - ଶୁଣାଗଲା - ଦାସୁ ନିଖୋଜ୍ ।

ତା ଗାୟକ ଦଳ ବି ଆଶ୍ଚର୍ଯ୍ୟ । ଗୁଡୁରିପଙ୍କା , ଆଖପାଖ ଗାଁ ତାଜୁବ । ତା ବୁଢ଼ୀ ମା'ଟି ର ଲୁହ ବନ୍ଦ ହେଉନଥାଏ । ତା' ସ୍ତ୍ରୀ ବିଛଣାରେ ପଡ଼ିଗଲାଣି । ଡଙ୍ଗରର ଚାଷବାସ ବେଳେ , ଗାଁ ଭିତର କୁଟୁମ୍ବ ମିଟିଙ୍ଗ୍ ଜାଗା ବେରତାମୁଣ୍ଡାରେ , ଝରଣାର ଗାଧୁଆ ଘାଟରେ , ହାଟବାଟରେ ଦାସୁ କଥା

- ଦାସୁ ମିଳୁନି ।

କିଏ କହିଲା - ଦାସୁକୁ ଦେବତା ଖାଇଗଲା ।

କିଏ କହିଲା - ଏ ଯେଉଁ ଗୀତ ଲେଖୁଛି ସେଥିପାଇଁ ନାଁ କରିବାକୁ ବମ୍ବେ ଦିଲ୍ଲୀ ପଳେଇଛି ।

ଶୁଣ୍ , ଶୁଣ୍ - ଖବର ମିଳିଲା - ରାୟଗଡ଼ା ରେଳଷ୍ଟେସନ୍ ଛକ ପାଖରୁ ଦୁଇଜଣ ଆନ୍ଧ୍ର ଆଡ଼ର ଗ୍ରେହାଉଣ୍ଡ ପୋଲିସି ସାଧା ପୋଷାକରେ ଆସି , ମୋଟର ସାଇକେଲରେ ଦାସୁକୁ ଉଠାଇ ନେଇଛନ୍ତି ।

ଆନ୍ଧ୍ରା ଗ୍ରେହାଉଣ୍ଡ ସର୍କାର ଦାସୁକୁ ତାଙ୍କ ଆଡ଼େ ଓଡ଼ିଶାରୁ ଟେକି ନେଇଛନ୍ତି । ଏଠାଡ଼େ ଗୁଡୁରିପଙ୍କାରେ ଚାଲିଲା ସର୍କାରମାନଙ୍କ ବିଜୟରେ ହସଖୁସି । ଦାସୁ ନାହିଁ , ଦାସୁ ପେଟରେ ନାତ ମାରିବାକୁ ବାହାରି ଆସିଲେ କୁମୁଟି ଶୁଣି ସର୍କାର । ଦାସୁ ଚଷି ଯାଇଥିବା ଜମିରେ ପଶି ସର୍କାରମାନେ କାଟିନେଲେ ପାଚି ।

ଦାସୁ ନାହିଁ - ଗୁଡୁରିପଙ୍କାରେ ପୁଣି ଆରମ୍ଭ ହୋଇଗଲା , ମେଳିଆ ଖୋଜିବାର ବାହାନାରେ ପୋଲିସ ସର୍କାରର ଲୁଟତରାଜ୍ । ସର୍କାରମାନଙ୍କ ହୋ ହୋ ଆତଙ୍କ ।

ରାୟଗଡ଼ା ଷ୍ଟେସନ୍ ଛକ ପାଖରେ ଗୋଟେ କ୍ୟାବିନ୍ ପଛରେ ପରିସ୍ରା କରୁଥାଏ । ଦି'ଟା ଗ୍ରେହାଉଣ୍ଡ ପୋଲିସ ତାକୁ ଟେକି ନେଲେ । ଦାସୁ କହୁଥାଏ - ମୁଁ କ'ଣ କଲି । ମୋତେ ତୁମେ ମାନେ କୁଆଡ଼େ ନେଉଛ ? ମୋର କି ଦୋଷ ? ଆମ ଓଡ଼ିଶା ପୋଲିସ ପାଖରେ ମୋତେ ଛାଡ଼ । ମୋ ସର୍କାର ଦୋଷ ବିଚାର କରୁ ।

ସେମାନେ କିଛି ଶୁଣିଲେନି । ସେମାନେ ମାଗିଲେ - ଲେଟର , ଲେଟର । ଦାସୁ ପାଖରେ କିଛି ଚିଠି ନଥିଲା । ସେ କାହା ଚିଠି କାହା ପାଖକୁ ନେଇ ଯାଉନଥିଲା । ଦାସୁ କହିଲା - ମୋ ପାଖରେ ଚିଠି ଫିଟି କିଛି ନାହିଁ । ମୋର ଗୀତ ଖାତା ଅଛି ।

ସୋମନେ କିଛି ଶୁଣିଲେନି । ତାକୁ ଆନ୍ଧ୍ରାର କମରଡ଼ା ଥାନାକୁ ମୋଟର ସାଇକେଲରେ ବସେଇ ନେଇଗଲେ । ସେମାନେ ଯେମିତି ସେମାନଙ୍କ ଷ୍ଟିଂ ଅପରେସନ୍‌ରେ ସଫଳ ହୋଇଥିଲେ । ସେମାନେ ଯେମିତି ସେମାନଙ୍କ ପଦୋନ୍ନତି ସ୍ୱପ୍ନରେ ଅନ୍ଧ ଥିଲେ ।

ଦାସୁ ହାତରେ ଧରେଇ ଦେଲେ ଗୋଟେ ଜିଅନ୍ତା ବମ୍ । ନାଲି ଆଖି ଦେଖାଇଲେ

- ତୁ ଏଇଟା ଧରି କହ ତୁ ନକ୍ସଲ ।

- ମୁଁ ନକ୍ସଲ ନୁହେଁ । ମୁଁ କାହିଁକି ବୋମା ଧରିବି ? ମୁଁ କଲମ ଧରିବା ଲୋକ । ମୁଁ ଗୀତ ଲେଖିବା ଲୋକ ।

ସେମାନେ ଶିକାରର ଆପତି ଶୁଣନ୍ତି ନାହିଁ ।

ସେମାନେ ଶିକାରର ଭାଷା ବୁଝନ୍ତି ନାହିଁ ।

ସେମାନେ ତା'କୁ ନଙ୍ଗଳା କରି ହାଜତକୁ ଠେଲି ଦେଲେ ।

ତା'ପର ଦିନ କମରଡ଼ା ଥାନାରୁ ତା' ହାତଗୋଡ଼ ବାନ୍ଧି ପାର୍ବତୀପୁରମ୍ ଥାନାକୁ ନେଇଗଲେ । ସେଠି ଥାନା ଅଫିସର ପି. ବିଜୟ କୁମାର । ଲୋକଟା ଦେଖିବାକୁ ଯେପରି ଭୟଙ୍କର , ଥାନା ଭିତରେ ବାଘ ଭଳି ହେଉଥିଲା । ଚଳେଇଲା ଦାସୁ ଉପରେ ପ୍ରବଳ ମାଡ଼ । ଦରମଲା ହୋଇ ପଡ଼ିଥାଏ ଦାସୁ । ତା' ପକେଟରୁ ସେମାନେ ତିନି ଶହ ଟଙ୍କା ଅଣ୍ଡାଳି ନେଇଗଲେ । ତା' ହାତରୁ ଘଣ୍ଟା ଖୋଲି ପକେଟରେ ପୂରେଇଲା ପି. ବିଜୟ କୁମାର ।

ସେମାନଙ୍କ ପାଇଁ ଦାସୁ ଯେପରି ଜିଅନ୍ତା ବିପଦ । ଗୋଟେ ଜାଗାରେ ତା'କୁ ରଖେଇ ଦେଉନଥାନ୍ତି । କମରଡ଼ା ଥାନା ବାଲା , ପାର୍ବତୀପୁରମ୍ ଥାନା ବାଲା ତାକୁ ବିଜୟନଗର ନେଇ ଗୋଟେ ଗୁପ୍ତ ଆଡ୍ଡାରେ ପହଂଚାଇ ଦେଲେ ।

ସେଠି ଦାସୁ ଦେଖିଲା ଗୁଣୁପୁର , ପଦ୍ମପୁରର ଦିଜଣ ଓଡ଼ିଆ ପୋଲିସ୍ । ଆନ୍ଧ୍ରା ପୋଲିସ ଆଡ୍ଡାରେ ଓଡ଼ିଶା ପୋଲିସକୁ ଦେଖି ଦାସୁ ଟିକେ ସାହସ ପାଇଲା । ଯାହା ହେଲେ ବି ତା' ପୋଲିସ ସର୍କାର ମାନେ ତା' ଭାଷା ବୁଝନ୍ତି । ବୁଝିବେ ତା ଅଭିଯୋଗ । ଏ ଗ୍ରେହାଉଣ୍ଡ ବାଲାଙ୍କ ଏନକାଉଂଟର କବଜାରୁ ତାକୁ ଓଡ଼ିଶା ନେଇଯିବେ । ସେ ଦି' ଓଡ଼ିଆ ପୋଲିସ ସର୍କାରକୁ ଆତୁର ହୋଇ ଚାହିଁଥିଲା ।

ଆନ୍ଧ୍ରା ପୋଲିସ ଦାସୁ ପାଟିରେ ବନ୍ଧୁକ ନଳୀ ପୂରାଇଲା । ଓଡ଼ିଶା ପୋଲିସ ଦାସୁକୁ ପଚାରିଲା - ନକ୍ସଲଙ୍କ ବିଷୟରେ କ'ଣ ଜାଣିଚୁ କହ ? ନଚେତ ନକ୍ସଲ ଡ୍ରେସ ପିନ୍ଧି ଆମ ସହିତ ଓଡ଼ିଶା ଚାଲ ।

ଦାସୁ ଗୋଟେ କଥା କହୁଥାଏ

- ମୁଁ ଗୀତ ଲେଖିବା ଲୋକ । ମୁଁ ଗୀତ ଗାଇବା ଲୋକ ।

- ତୋରି ଗୀତ ପାଇଁ ତ ଏତିକି ନାଟ ।

ଆନ୍ଧ୍ରା ପୋଲିସ ସାମ୍ନାରେ ଓଡ଼ିଶା ପୋଲିସ ତା' ପିଠିରେ ଆରମ୍ଭ କରିଦେଲେ ଠେଙ୍ଗା ମାଡ଼ । ଆନ୍ଧ୍ର ପୋଲିସ ଆଉ କେତେ ଦେଖିବେ , ସେମାନେ ବି ରବର ପାଇପରେ ଦାସୁକୁ ପିଟି ଚାଲିଲେ , ରବର ପାଇପ ଖଣ୍ଡ ଖଣ୍ଡ ହୋଇଗଲା । ରକ୍ତାକ୍ତ ପିଣ୍ଡୁଳାଟେ ପରି ସେ କୁଇ କବିଟି ଗଡୁଥାଏ । ସେଠି ଥିଲା ଗୋଟେ ବୁଢ଼ା ଓଡ଼ିଆ ପୋଲିସ । ସେ କହିଲା - ଏଇଟାକୁ ଦୟାମୟା ନାହିଁ । ରେଳଗାଡ଼ି ତଳେ ଏ'ଟାକୁ ଶୋଇ ଦେଇଆସ ।

ଆନ୍ଧ୍ରା ପୋଲିସ ତା'କୁ ତଳୁ ଉଠାଇଲା । ତାକୁ ଗୋଟେ ସ୍ଲେଟ ଧରାଇ

ଦିଆଗଲା । ସେ ସ୍ଲେଟରେ ଚକ୍ ଖଡ଼ିରେ ଲେଖା ହୋଇଥିଲା - ମୁଁ ଜୟରାମ ମାଝି , ନକ୍ସଲପନ୍ଥୀ ।

ଦାସୁ ତା ଫଟା ଆଖିରପତା ଟେକି ଦେଖିଲା - ଜୟରାମ ମାଝି ନାଁରେ ତାକୁ ନକଲି ନକ୍ସଲ ସଜେଇ , ସେମାନେ କ୍ୟାମେରାରେ ତା' ଫଟୋ ତୋଳି ନେଇଛନ୍ତି । ସେ ତା ଫାଟିଯାଇଥିବା ଓଠରେ ଭରିଲା ପ୍ରତିବାଦ - ମୁଁ ଜୟରାମ ମାଝି ନକ୍ସଲ ନୁହେଁ । ମୁଁ ଦାସୁରାମ ମାଲେକା ।

ସେମାନେ କିଛି ଶୁଣିଲେ ନାହିଁ ।

ମିଛ ପ୍ରମାଣ ଯୋଗାଡ଼ କରି ସେମାନେ ତାକୁ ବବୁଲି କୋର୍ଟରେ ହାଜର କରେଇଲେ । କୋର୍ଟ ତାକୁ ବିଶାଖାପାଟଣା ଜେଲ୍‌କୁ ପଠାଇଦେଲା । ସେ ଜେଲରେ ରହିଥାଏ । ଓଡ଼ିଶା ପୋଲିସ ମିଛ କେସ୍ କରି ତାକୁ ଓଡ଼ିଶା ଆଣିଲା । ତା' ପରେ ଆର.ଉଦୟଗିରି ଜେଲ । ସେଠୁ ପାରଳାଖେମୁଣ୍ଡି ଜେଲ - ଏମିତି ଦୁଃସ୍ୱପ୍ନ ପରି ବର୍ଷେ ଚାରିମାସ ଜେଲକୁ ଜେଲ ଦାସୁ ଘୋଷରା ହେଲା ।

ଯେଉଁଦିନ ଦାସୁ ଜେଲରୁ ମୁକୁଳି ଗୁଡୁରିପଙ୍କା ଆସିଲା , ନିର୍ଯ୍ୟାତନା ଭିତରୁ ଉଠି ଆସିଥିବା ଦାସୁ ଦିଶୁଥିଲା ଦୋସରା । ତା'ଉପରେ ବିତିଯାଇଥିବା ଦିନର ଚିହ୍ନ ତା' ଦେହରୁ ଲିଭିନଥିଲା । ହେଲେ ତା'ଆଖିରୁ ଚକ୍ ଚକ୍ କରୁଥିଲା ମୁକ୍ତିର ଗୋଟେ ସରଳ ଖୁସି ।

ଜେଲରେ ଥିବା ଭିତରେ ତା' ମା' , ସ୍ତ୍ରୀକୁ ଭେଟିବାକୁ ସୁଯୋଗ ଦେଇନଥିଲା ଜେଲର ସର୍କାର । ଏହି ଷୋଳମାସ ତା' ପରିବାର ଅଭାବ ଅନାଟନରେ ବୁଡ଼ି ଦିଶାହରା ଦିଶୁଥିଲେ । ସର୍କାରମାନେ କାଟି ନେଇଥିଲେ ତା' ବର୍ଷକର ଫସଲ । ଲୁଟତରାଜରେ ଛିନ୍‌ଭିନ୍ ହୋଇ ପଡ଼ିଥିଲା ତା ଜମି । ଅତ୍ୟାଚାର ଭିତରୁ ଉଠିଆସି ଦାସୁ ଭେଟୁଥିଲା ଲୁଂଠନକୁ । ଜମିଫଟା , ଛାତିଫଟା ତାକୁ ଲାଗୁଥିଲା ଏକାପରି ।

ଦାସୁ ଫେରିଆସିଛି - କୁରେଇ ଫୁଲପରି ଦାସୁ ଚାରିପାଖରେ ଘେରିଗଲେ ଗୁଡୁରିପଙ୍କାର ବୁଢ଼ାବୁଢ଼ୀ , ଡୋକ୍ରା ଡୋକ୍ରି , ଧାଂଡ଼ାଧାଂଡ଼ି । ସେମାନେ ଷୋଳମାସ ପରେ ଦେଖୁଥିଲେ ଦାସୁକୁ ।

ଦାସୁକୁ ଦେଖିଲେ ସେମାନଙ୍କୁ ଭଲ ଲାଗେ ।

ଦାସୁ ଗୀତ ଲେଖୁଥିଲେ ସେମାନଙ୍କୁ ଭଲ ଲାଗେ ।

ଦାସୁ ଗୀତ ଗାଉଥିଲେ ଭଲ ଲାଗେ ।

ଦାସୁ ଚାରିପାଖରେ ଗହଳି ଥିଲେ ଭଲ ଲାଗେ ।

ଯେପରି ଅନେକ ବର୍ଷ ଧରି ସେମାନେ ଦାସୁର ଗୀତ ଶୁଣିନଥିଲେ । ନାଚିପାରି

ନଥିଲେ । ଅନେକ ବର୍ଷ ହେଲା ଯେପରି ତା' ଗୀତ କହିନାହିଁ କୁଇମାନଙ୍କ ପାଇଁ କେଉଁଟା ଠିକ , କେଉଁଟା ଭୁଲ୍ !

- ଜେଲ ଭିତରେ ବି ତମେ ବେଶ୍ ଗୁଡ଼ାଏ ଗୀତ ଲେଖୁଥିବ ?

- ଗୀତ ଲେଖୁଛି ବୋଲି ତ ସେମାନେ ମୋତେ ଜେଲ୍ ଭିତରେ ପୂରେଇ ଦେଲେ । ଜେଲ ଯେମିତି ଜାଗା , ତାଙ୍କ ପାଇଁ ମୁଁ ଯେପରି ଅପରାଧୀ । ମୋତେ ସେମାନେ ଲେଖିବାକୁ କାଗଜ କଲମ ଦେବେ ? କିଛି ଲେଖିବାକୁ ଜେଲର ଚୂଲ୍ଲୀ ଅଙ୍ଗାର ଯା' ଭରସା । ଜେଲ୍ ଭିତରେ ଗୀତ ତ ଲେଖିପାରିଲିନି । ଆମ କୁଇ ଭାଷା ପାଇଁ ଅକ୍ଷର ସବୁ ତିଆରି କରି ଅଙ୍ଗାରରେ ଗାରେଇ ଅଭ୍ୟାସ କରିଛି । ଥରେ ଆର୍.ଉଦୟଗିରୀ ଜେଲରେ ଗୋଟେ ଜେଲବାଲା ମୋତେ ପଚାରିଲା - ଆବେ ! ତୁ କବି ହେଇଛୁ ? ଭୁବନେଶ୍ୱରରୁ ତଥ୍ୟ ଅନୁସନ୍ଧାନକାରୀ ଦଳ ଆସି ତୋତେ ଭେଟୁଛନ୍ତି । କାଗଜରେ ତୋ ନାଁରେ ଖବର ବାହାରୁଛି । ତୁ କି କବି ? କେଉଁ ଭାଷାରେ କବିତା ଲେଖୁ ? କୁଇ ନା ଓଡ଼ିଆ ନା ତେଲୁଗୁ ? ମୁଁ କହିଲି - ଓଡ଼ିଆ ଅକ୍ଷରରେ କୁଇ ଭାଷାରେ ଲେଖେ । ଜେଲବାଲା ପଚାରିଲା - କାହିଁକି ତୁମ କୁଇ ଭାଷାର କ'ଣ ଅକ୍ଷର ନାହିଁ ? ମୁଁ ମନା କଲି । ସେ ଜେଲବାଲା ମୋତେ କହିଲା - ଆବେ ! ଅକ୍ଷର କରି ତୋ ଲୋକଙ୍କୁ ଦେଖାଇବୁ । ସେମାନଙ୍କୁ ଶିଖାଇବୁ । ସେମାନେ ସେ ଅକ୍ଷରକୁ କୁଇ ଅକ୍ଷର ବୋଲି ମାନିନେବେ । ସେହି ଦିନରୁ ଜେଲ ଚଟାଣରେ ଅଙ୍ଗାରରେ ଗାରେଇ , ଅଭ୍ୟାସ କରି ଛ ମାସରେ ଆମ କୁଇ ଅକ୍ଷର ତିଆରି କଲି ।

ଦାସୁ ତା' ବନିୟନର ପକେଟରୁ ଚାରି ଭାଙ୍ଗର କାଗଜଟିଏ ବାହାର କଲା । ତା' କୁଇ ଭାଇ ମାନଙ୍କ ଆଗରେ ଟେକି ଧରିଲା । ସେମାନେ ସବୁ ଆଖି ବଡ଼ ବଡ଼ କରି ଦେଖିଲେ । ଚିତ୍ରାଙ୍କନ ପରି ଅକ୍ଷର ସବୁ । ଦାସୁ ତିଆରି କରିଥିଲା କୁଇମାନଙ୍କ ପାଇଁ ପ୍ରଥମ ଲିପି ।

- ଆମେ ଅକ୍ଷର ପାଇଗଲୁ ।

- ଦାସୁ ପାଇଁ ଆମେ ଆମ କୁଇ ଅକ୍ଷର ପାଇଲୁ ।

- ଆମେ ଆମ ଅକ୍ଷର ଶିଖିବୁ । ଆମ ଅକ୍ଷରରେ ଲେଖିବୁ ।

ସମସ୍ତଙ୍କ ଖୁସିର ଗହଳିରେ ନିରୀହ ଉଦ୍‌ଭାବକ ଭାବେ ଠିଆ ହୋଇଗଲା ଦାସୁ । ଦାସୁର ଲେଖିଥିବା ଗୀତ ତାଳରେ ନାଚିବା ପାଇଁ ଗୋଟେ ଧାଙ୍ଗଡ଼ା ଝିଅଟାରେ ହାତ ବେଢ଼େଇ ନେଲା ଧାଙ୍ଗଡ଼ି । ଦାସୁ ହାତରେ କିଏ ଗୋଟେ ଆଣି ଚାଙ୍ଗୁ ଧରାଇ ଦେଲା । ଚାଙ୍ଗୁ ଧରିଲେ ତା ଭିତରୁ ବାହାରି ଆସେ ଗୀତ

- ଆମ କୁଇ ଭାଷା ଆଉ ଏ କୁଇ ମୂଲକ

ତା'ର ରକ୍ଷା ପାଇଁ ଆସ ଆଜି ହେବା ଏକ ।

ଗୀତରେ ଉନ୍ମାଦନା , ଗୀତରେ ସାହସ , ଗୀତରେ ହକ୍ ପାଇଁ ଉଚ୍ଚ ସ୍ୱର - ନାଚ ଗୀତରେ ରାତି ଅଧ ହେଲା । ନାଚ ଭିତରେ ଦାସୁ ଭାବୁଥାଏ - ଜେଲରେ ଅଙ୍ଗାରରେ ଗାରେଇ ତିଆରି କରିଥିବା ଅକ୍ଷରକୁ ନେଇ ଇଂରାଜୀ ଓଡ଼ିଆ ଅକ୍ଷରର ଛବି ବହି ଭଳି କୁଇ ଅକ୍ଷର ବର୍ଣ୍ଣକୁ ନେଇ ଛାପିବ ଗୋଟେ ଛବି ବହି । କୁଇ ପିଲା ଖୁସିହେବେ । ଚିତ୍ର ଦେଖି ଅକ୍ଷର ଶିଖିବେ । କୁଇ ଅକ୍ଷରରେ ଦିନେ ସମସ୍ତେ ଲେଖିବେ ।

ଗୁଡୁରିପଙ୍କା ଗାଁକୁ ଲଗାଲଗି ବଣମୂଲକରେ ଯେତେ କୁଇ , ସୌରା କନ୍ଧ ମଣିଷ ସବୁ , ସେମାନେ ତାକୁ ଭଲ ପାଆନ୍ତି । ସେମାନଙ୍କ ପାଇଁ ସର୍କାରଙ୍କ ଅତ୍ୟାଚାର ତା' ପାଇଁ କିଛି ନୁହେଁ । ପୁଣି ଦାସୁ ତା' ଜଖମ ଜାଗାରେ ମଲମ ଲଗାଇ ଉଠେ ।

ପୁଣି କଲମ ଧରେ ଦାସୁ ।

ପୁଣି ଗୀତ ଆଡକୁ ଫେରିଯାଏ ।

ତା ଉଜୁଡ଼ା ଜମିକୁ ସଜାଡ଼ି ବସେ ।

ତା'ଠୁ ସାନ ବୟସର ଗାଁ ପିଲାଙ୍କ ସହ ବି ଖେଳରେ ମାତେ ।

ବେରଣ ମୁଣ୍ଡାରେ ସାଙ୍ଗସାଥୀଙ୍କ ସହ ହସଖୁସିରେ ସନ୍ଧ୍ୟା ସାରେ । ଘରକୁ ଘର ବୁଲି କୁଇ ଅକ୍ଷର ଶିଖାଏ ।

ତା'ରି ଭିତରେ ଦାସୁ ତେଜ୍ ହୁଏ ।

ସବୁ ଠିକ୍‌ଠାକ୍ ଥାଏ ବୋଲି ଦିଶୁଥାଏ । ହେଲେ ଜଙ୍ଗଲ , ଡଙ୍ଗର , ଝରଣା ଭରା ବଣୁଆ ଗାଁ ଗୁଡ଼ିକରେ ସବୁଦିନ ଠିକ୍‌ରେ ଚାଲେନା ।

ଖରା ଚାରିମାସ ଲାଗିରହେ ମଡ଼କ । ଅଯଥାରେ ଝରଣାରେ ବୋହି ଯାଉଥାଏ ପାଣି । ବଣ ଜମି ସବୁ ପାଣି ବିନା ଠୋ ଠା ଠି । କେନାଲ ପାଇଁ ଆସିଥିବା ଟଙ୍କା ଖାଇ ଯାଇଥାଏ କେଉଁ ସର୍କାର ?

ଉପରୁ ମୁଣ୍ଡଫଟା ଖରା । ପେଟରେ ଭୋକ , ଘରେ ଘରେ ଖାଦି ନଥାଏ । ସାହୁକାର ପାଖରେ ବନ୍ଧକ ଦେବାକୁ କିଛି ନଥାଏ । ଆମ୍ବ ଟାକୁଆ ଘର କୋଣରେ ସାଇତି ରହିଥାଏ । ସେତେବେଳେ ଆମ୍ବଟାକୁ ପେଜ ଉପରେ ଭରସା । ଅନାହାର , ଅଖାଦ୍ୟରେ ଖରା ଚାରିମାସ ଏଠି ସେଠି ଝାଉଁଳି ପଡ଼ନ୍ତି ଲୋକେ । ବର୍ଷାଦିନ ଆସେ । ଟିଉବ୍‌ୱେଲ୍ ଗାଁ କୁ ଗାଁ ଅସଜ ହୋଇପଡ଼ିଥାଏ । କେଉଁ ଗାଁରେ ଟିଉବ୍‌ୱେଲ୍ ନଥାଏ । ଲୋକେ ତ ସେହି ଝର ପାଣି ପିଇବେ । ଚୁଆ ପାଣି ପିଇବେ । ଝାଡ଼ା ହେଲେ ଔଷଧ ନଥାଏ , ଜର

ହେଲେ ବଇଦ ନଥାଏ । ବର୍ଷା ଚାରିମାସ ହଇଜା ମେଲେରିଆରେ ପୋକମାଛି ପରି ଝରିପଡ଼ନ୍ତି ଲୋକେ ।

ସେମାନେ ମୂର୍ଖ । ସେମାନେ ଅଶିକ୍ଷିତ । ସେମାନେ ଅବାଗିଆ , ସେମାନେ ଫିମ୍ପିମରା ଆମ୍ବ ଟାକୁଆ ପେଜ ପିଇବେ । ଜଙ୍ଗଲି ବିଷାକ୍ତ ଖାଦ୍ୟ ଖାଇବେ । ବାସି ଗୋରୁମାଂସ ଖାଇବେ । ବୁଆ ପାଣି ପିଇବେ । ଏହା ତାଙ୍କ ପାଇଁ ସାଧାରଣ କଥା ।

ଏମାନଙ୍କ ସଂପର୍କରେ ଏଯା ଭାବି ଚୁପ୍ ହୋଇ ବସିଥାଏ କେଉଁ ସର୍କାର ? ଦାସୁ ଏକଥା ଭାବେ । ତା ନିଜ ଲୋକଙ୍କ ପାଇଁ କମ୍ପି ଉଠେ । ତା'ଛାତିରେ ଝରୁଥାଏ ଧାରା ଶ୍ରାବଣ ।

ଯେବେ ଦୂରଗାଁରୁ ମରିଗଲା , ମରିଗଲା ର କୋହ ଗୁଡୁରିପଙ୍କା ଆଡ଼କୁ ମାଡ଼ିଆସିଲା । ସେମାନେ ଜାଣିଗଲେ ଆରମ୍ଭ ହୋଇ ଯାଇଛି ମହାମାରୀ ।

ଦାସୁକୁ ଗୀତ ଲେଖିବାକୁ ଫୁର୍ସତ କାହିଁ ? ହଇଜା ମେଲେରିଆରେ ଛଟପଟ ହେଉଥାଏ ଗାଁ ଗଣ୍ଡା । ଘରକୁ ଘର ଦାସୁ ତା'ଗାୟକ ଦଳ ସହ ଯାଇ ବୁଝାଇଲା - ପାଣି ଫୁଟାଇ ପିଅ । ପରିଷ୍କାର ଗୁହ । ସାବଧାନରେ ଚଳ । କାହାଘରେ ବିଛଣାଲଗା , ନିରାଶ୍ରୟା ବୁଢ଼ୀ - ତା ଗୁହ ସଫା କରିବା , ତା'ର ଯତ୍ନ ନେବା , ଦାସୁ ଲାଗିଥାଏ ସେହି କାର୍ଯ୍ୟରେ । ଗାଲିମେରା ଗାଁରେ ଔଷଧ ମିଳିବ । ସେଠିକି ଔଷଧ ପାଇଁ ଲୋକ ପଠାଏ । ଗାଲିମେରା ଘାଟି ବାଟରେ ତିନି ଚାରି କିଲୋମିଟର ଦୂର । ସେଠୁ ଔଷଧ ଆସିଲେ ଏଠି କେଇ ଜଣଙ୍କ ଜୀବନ ବଂଚିବ । ଗାଲିମେରା ରେ ବଇଦ ଥାଏ । ସନ୍ଧ୍ୟା ବେଳକୁ ଖାଲି ହାତରେ ଲୋକ ଫେରିଆସେ ।

ସକାଳୁ ତା'ରି ପାଖରେ ଥାଏ ଦାସୁ । ହଇଜାରେ ବୋହିଯାଉଥିବା ଗୁହ ସଫା କରୁଥାଏ । ତା' ପାଟିରେ ଟୋପେ ଟୋପେ ପାଣି ଦେଉଥାଏ । ତା' ପିଠିରେ ହାତ ବୁଲାଇ ସାନ୍ତ୍ୱନା ଦେଉଥାଏ । ଅପେକ୍ଷା କରିଥାଏ ଗାଲିମେରାରୁ ଔଷଧ ଆସିବ । ଯୋଶେଫ ବଂଚି ଉଠିବ । ଦାସୁ ଦେଖୁଥାଏ - ତା ଆଖିର ସାମ୍ନାରେ ଯୋଶେଫର ଜୀବନ ଚାଲିଗଲା ।

ଗୁଡୁରିପଙ୍କାରେ ବି ହଇଜା ଲାଗିଚି ଶୁଣି ଚାଲିଆସେ ଦାସୁ । ହଇଜାରେ ଯୋଶେଫ , ତା' ଗାୟକ ଦଳର ସାଥୀ ଚାଲି ଯାଇଥାଏ । ଦାସୁ ଆଖିରେ ଜଣଙ୍କ ପାଇଁ ଲୁହ କାହିଁ ? ସାରା ଗାଁ ତ ଔଷଧ ବିନା ସଢ଼ି ଯାଉଥିଲେ ହଇଜାରେ । ନିରୁପାୟ ଦାସୁ । ପାଗଳପରି ଏ ଘର ସେ ଘର ଧାଇଁ ବୁଲୁଥାଏ । ତା' ଦୁଇ ହାତରେ ମହାମାରୀକୁ ଆଡ଼େଇ , ତା' ଗାଁ ଲୋକଙ୍କୁ ବଂଚେଇ ରଖିବାର ନିଶାରେ ବୁଲୁଥିଲା ଘରକୁ ଘର ।

ରୋଗୀକୁ ରୋଗୀ , ଦାସୁର ଖାଇବା ପିଇବା , ଶୋଇବା ଉଠିବାରେ ଠିକ୍ ଠିକଣା ନଥିଲା ।

ସକାଳୁ ରାତି ଯାଏଁ , ସଂକ୍ରମଣକୁ ରୋକିବାକୁ ଧାଇଁ ବୁଲୁଥିବା ଦାସୁ ଖୋଦ୍ ହୋଇଗଲା ସଂକ୍ରମିତ ।

ପ୍ରଥମେ ପ୍ରଥମେ ତା'ର ପେଟ କାଟିଲା । ବାନ୍ତି ବାନ୍ତି ଲାଗିଲା । ତା' ଦେହରେ ଭର୍ତି ହୋଇଗଲା ଜର । ବୋହିଗଲା ଦୁର୍ଗନ୍ଧ ପତଳାଗୁହ ।

ଗୁଡୁରିପଙ୍କାରେ ହୁରି ପଡ଼ିଲା - ଦାସୁ ହଇଜାରେ ।

ଯିଏ ଯେଉଁଠି ଯିଏ ଯାହା ରୋଗୀ ପାଖରେ ଥିଲେ , ସମସ୍ତେ ଦାସୁ ପାଖକୁ ଧାଇଁ ଆସିଲେ । ସମସ୍ତଙ୍କର କାନ୍ଦ ବୋବାଳି ପଡ଼ିଗଲା ।

ନାଇଁ ନାଇଁ - ଏ ଗୀତ ଲେଖୁଥିବା , ଗୀତ ଗାଉଥିବା ଲୋକକୁ ବଂଚାଇବାକୁ ହେବ । ଏ ପିଲା ସହ ପିଲା , ବୁଢ଼ା ସହ ବୁଢ଼ା, ହସ ଖୁସିରେ ଗାଁ ଲୋକକୁ ରଖୁଥିବା ଲୋକଙ୍କୁ ବଂଚାଇବାକୁ ହେବ । ସର୍କାରମାନଙ୍କୁ ଭୟ ନ କରିବାକୁ ସାହସ ଦେଉଥିବା ଲୋକକୁ ବଂଚାଇବାକୁ ହେବ ।

ଦାସୁ ତ ଗାଁ ଲୋକଙ୍କୁ ବୁଝାଉଥିଲା - ଗୁଣିଗାରେଡ଼ିରେ ରୋଗ ଭଲ ହୁଏନା , ଔଷଧ ଖାଅ । ବିନା ଔଷଧରେ ମରିଚାଲିଛନ୍ତି ଡୋକ୍ରା ଡୋକ୍ରି , ଧାଂଡ଼ା ଧାଂଡ଼ି । ଦାସୁକୁ ବଂଚାଇବା ପାଇଁ କେଉଁଠି ମିଳିବ ଔଷଧ ଟିକେ ? ତାଙ୍କରି ଭିତରୁ ଗୋଟେ ଧାଂଡ଼ା ଖବର ରଖୁଥିଲା - ବିରିକୋଟ ଗାଁରେ ଡାକ୍ତରୀ ଦଳଙ୍କ କ୍ୟାମ୍ପ ପଡ଼ିଛି । ସେଇଠି ମିଳିବ ଔଷଧ । ଗୁଡୁରିପଙ୍କାରୁ ବିରିକୋଟ ସତର କିଲୋମିଟର ଦୂର । ସେଠୁ ଔଷଧ ଆଣିବାକୁ ବାହାରି ପଡ଼ିଲେ ଗାଁର ଦି'ଟା ଧାଂଡ଼ା । ଔଷଧ ଖାଇଲେ ଦାସୁକୁ ହଇଜା ଛାଡ଼ିବ । ସେ ପୁଣି ଗୀତ ଲେଖିବ । କୁଇ ପିଲାଙ୍କୁ ଶିଖାଇବ କୁଇ ଅକ୍ଷର । ପୁଣି ଗାଁ ଲୋକଙ୍କୁ ତା'ଗୀତରେ ଶୁଣାଇବ , ମଣିଷ ଭଳି ବଂଚିବା ପାଇଁ ସାହସ । - ଦାସୁର ଜୋସ୍‌ରେ ସେ ଦି'ଟା ଧାଂଡ଼ା ସତର କିଲୋମିଟର ପାହାଡ଼ , ଡଙ୍ଗର , ଝରଣା ପାରିହୋଇ ବିରିକୋଟ ଧାଇଁ ଚାଲିଗଲେ ।

ଔଷଧ ଆସିଲେ - ଦାସୁ ଭଲ ହେବ , ମହାମାରୀର ମରଣ ମୁହଁରୁ ଦାସୁକୁ ଘୋଷାରି ଆଣିବାକୁ ପ୍ରାର୍ଥନାରେ ଥିଲେ ଗୁଡୁରିପଙ୍କାର ସମସ୍ତେ । ବିରିକୋଟରେ ଚାଲିଥିଲା ସ୍ୱାସ୍ଥ୍ୟ ସେବା ପାଇଁ ଅସ୍ଥାୟୀ କ୍ୟାମ୍ପ । ମିଡିଆର ଘୋ'ଘୋ ଶୁଣି ସେଠି ଠୁଳ ହୋଇଗଲେ ସଫା ପୋଷାକ ପିନ୍ଧା ଦୂର ସହରରୁ ବାଧ ହୋଇ ଆସିଥିବା ଡାକ୍ତର ନର୍ସଦଳ । ତାଙ୍କ ହାତ ପାଖରେ ଗଦା ହୋଇଗଲା ଔଷଧ । କିଏ ବଣୁଆ ବଢ଼ିଲା ନଈ ପାରି ହୋଇ ଡ଼ଙ୍ଗରର

ଉଠାଣି ଦେଇ ଧଇଁ ସଇଁ କୋଡ଼ିଏ ପଚିଶ କିଲୋମିଟର ଦୂରରୁ ଆସିଥିଲା । କିଏ ଜରରେ କମ୍ପୁଥାଏ । ଆଠ ଦଶ କିଲୋମିଟର ଦୂର ଗାଁରୁ ଘୁଷୁରି ଘୁଷୁରି ସେଠି ଔଷଧ ପାଇଁ ଆସିଥାଏ । ଘରେ ରୋଗୀ , ଗାଁରେ ମହାମାରୀ । ଔଷଧ ନେଇ ନିଜ ନିଜ ଲୋକଙ୍କୁ ବଂଚେଇବା ଆତୁରତାରେ ସେଠି ଔଷଧ ପାଇଁ ସମସ୍ତେ ବ୍ୟସ୍ତ । ସମସ୍ତେ ବ୍ୟାକୁଳ । ଡ଼ାକ୍ତର , ନର୍ସ , କମ୍ପାଉଡର - ଚାରି ଜଣଙ୍କ ଆଡ଼କୁ ଔଷଧ ପାଇଁ ଲମ୍ବି ଯାଉଥାଏ ଶହ ଶହ କଙ୍କାଳସାର ହାତ ।

ଗୁଡୁରିପଙ୍କାରେ ଦୁଇଜଣ ଧାଂଡ଼ା ସେଠି ଭିଡ଼ ଠେଲି ଔଷଧ ନେଇ ଫେରିଲେ । ଆସିଥିଲେ ଚାଲିଚାଲି । ଫେରିଲାବେଳକୁ ସତର କିଲୋମିଟର ଧାଇଁ ଧାଇଁ ଚାଲିଲେ । ଦାସୁର କ'ଣ ହେଲା ? ଦାସୁ ଔଷଧ ପାଇଁ କ'ଣ ଅପେକ୍ଷା କରିଥିବ ? ଦି'ଟା ଧାଂଡ଼ା ଧାଉଁଥିଲେ ଉଦ୍‌ବେଗରେ । ସେମାନେ ଉତେଜନାରେ ଫାଟିପଡୁଥିଲେ ।

- ଦାସୁ ମରିଗଲେ , ତୁମ ପାଇଁ ଠିକ୍ ହେବନି ସର୍କାର ! ସେମାନଙ୍କ ଛାତିରେ ଉଠୁଥିଲା କ୍ରୋଧ , ଜଙ୍ଗଲରେ ଶୁଭୁଥିଲା ତା'ର ପ୍ରତିଧ୍ୱନି ।

ସେ ଦି'ଜଣ ଗାଁ ମୁଣ୍ଡ ଧରିଲେ ।

ସେମାନଙ୍କ ହାତରେ ଔଷଧ ଥିଲା ।

ହାତରୁ ଔଷଧ ପୁଡ଼ିଆ ଗଳିପଡ଼ିଲା ।

ସେ ସର୍କାରୀ ଔଷଧ ଖାଇବାକୁ ଦାସୁ ଆଉ ନଥିଲା ।

*- କାଏମା , ଧର୍ମଶାଳା , ଯାଜପୁର*

*- ସୌଜନ୍ୟ , ନିଶାନ, ଅକ୍ଟୋବର-ଡିସେମ୍ବର ୨୦୦୭*



# ପାର୍ଟିର ପାଟି

ଗୁଡୁରିପଙ୍ଗା ଗାଁର ଦାସୁରାମକୁ ମୁଁ ଚିହ୍ନଟ କରିସାରିଥାଏ । ପତଳା , ନିରୀହ , ନିର୍ବୋଧ ଭଳି ଦିଶୁଥିବା ଚତୁର ଗାୟକୀ - କବି ଦାସୁରାମ୍ ।

ପାର୍ଟିରେ ସେତେବେଳେ ମୋ ଅବସ୍ଥା ବିପର୍ଯ୍ୟୟ ଦେଇ ଗତି କରୁଥାଏ । ପାର୍ଟି ସ୍କ୍ୱାର୍ଡର ଯେଉଁ ଝିଅକୁ ଭଲ ପାଉଥାଏ । ଆମ ଦୁଇଜଣଙ୍କ ବ୍ୟାପାର ନେଇ ମାଣ୍ଡିମେରା ଜଙ୍ଗଲରେ ଗୋଟେ ମିଟିଂ ସରିଥାଏ । କଥା ହୋଇଥାଏ - ଆମେ ଯଦି ବାହାହେବୁ , ତେବେ ଦୁଇଜଣଙ୍କୁ ବର୍ଷେ ଅପେକ୍ଷା କରିବାକୁ ହେବ , ତା' ଆଗରୁ ମୁଁ ଖାସୁ ହୋଇଯିବା ବି ଦର୍କାର ।

ପାର୍ଟିରେ କାମ କରିବ ମାନେ , ପ୍ରେମ ନକଲେ ଝୁରି ଝୁରି ମଲ । ଯଦି ପ୍ରେମ କରି ବାହାହେବାକୁ କହିଲ - ପାର୍ଟିର ଗୋଟିଏ ନିୟମ - ସଂସାର କର ମନାନାହିଁ , ଛୁଆପିଲା ପାର୍ଟି ପାଇଁ ମୁଣ୍ଡବ୍ୟଥା ।

ମୋ ପ୍ରେମିକାକୁ ପାଇବା ପାଇଁ , ବର୍ଷେ ଅପେକ୍ଷା ସମୟରେ କାଳେ ପାର୍ଟି କାମରେ ଆମେ ମନ ଦେଇପାରିବୁନି , ତାକୁ ଓଡ଼ିଶା ବର୍ଡର ସେପାଖ ଆନ୍ଧ୍ର ଜୋନ୍‌କୁ ନିଆଗଲା । ମୋତେ ଗେରିଲା ବାହିନୀରୁ ହଟାଇ ମୋ କାନ୍ଧରୁ ବନ୍ଧୁକ ଓହ୍ଲାଇ ଦିଆଗଲା । ମୋତେ ଅର୍ଡ଼ର ହେଲା - ଗଜପତି- ରାୟଗଡ଼ା ଜିଲ୍ଲାରେ ମାସ୍ - କଂଟାକ୍ଟ କଲ୍‌ଚରାଲ୍ କଥା ମୁଁ ବୁଝିବି ।

ଜଣେ ଦାର୍ଶନିକ ହେବା ପଛରେ ଆଉ କେଉଁ ଦାର୍ଶନିକର ବହି କାମ କରୁଥାଏ । ସେମିତି ମାଓ-ସେତୁଂ । ପାର୍ଟିରେ ରହି ତାଙ୍କ ଦର୍ଶନକୁ ଘୋଷି ସାରିଥାଏ - 'ଶତ୍ରୁକୁ ପରାଜିତ କରିବା ପାଇଁ ଅବଶ୍ୟ ଆମକୁ ସର୍ବପ୍ରଥମ ବନ୍ଧୁକଧାରୀ ସୈନବାହିନୀ ଉପରେ ନିର୍ଭର କରିବାକୁ ହେବ । ହେଲେ କେବଳ ମାତ୍ର ଏହି ଧରଣର ବାହିନୀ ଯଥେଷ୍ଟ ନୁହେଁ । ଗୋଟିଏ ସାଂସ୍କୃତିକ ବାହିନୀ ଆମର ଅବଶ୍ୟ ରହିବାକୁ ହେବ । ସେ ବାହିନୀ ଆମକୁ ଐକ୍ୟବଦ୍ଧ କରିବ ।' ସେହି ସାଂସ୍କୃତିକ ବାହିନୀର ଖୋଜାଣରେ ଯେତେବେଳେ ମୁଁ , ଗଜପତି ଗୁଡୁରିପଙ୍ଗାରେ ମୋତେ ମିଳିଗଲା ଦାସୁରାମ୍ ।

ଅଡବା ଜଙ୍ଗଲରେ ଜଣେ ସୌରା ଆଦିବାସୀ ଘରେ ମୁଁ ପାଂଚ ଛ' ଦିନ ଚୁପ୍‌ଚାପ୍ ବସିଥାଏ । କାମ କେଉଁଠୁ ଆରମ୍ଭ କରିବି - କାହାକୁ ନେଇ ଆରମ୍ଭ କରିବି, ଏହି ଚିନ୍ତାରେ ଥାଏ । ଆସି ପହଂଚିଲା ପାର୍ଟି ଇନ୍‌ଫର୍ମର ଜୁନୁସ୍ । ସେ କୁଇ ଟୋକାର ଗୋଟେ ସ୍ୱପ୍ନ , ସେ ପାର୍ଟିର ଡ୍ରେସ ପିନ୍ଧି ରାଇଫଲ୍ ଧରିବ । ପାର୍ଟି ତଳ କ୍ୟାଡରରେ ସେ ପାଇଁ ମନଦେଇ କାମ କରୁଥାଏ ।

ଜୁନୁସ୍ ମୋତେ ଦାସୁରାମ୍ ମାଲେକା ବିଷୟରେ ପ୍ରଥମ ଖବର ଦେଲା । ପଚାରିଲି - ଏବେ କ'ଣ କରୁଛି ଦାସୁରାମ ?

- କରିବ କ'ଣ ? ଗରିବ ଘର ପିଲା । ତା' ବାପା ମାରା ପଡିଛି । ଘରେ ତା' ମା' ବୁଢ଼ୀ ଆଉ ସ୍ତ୍ରୀ । ସପ୍ତମ ପଢ଼ିଛି । କବିଲୋକ । ଗୀତ କବିତା ସବୁ ଲେଖୁଛି । ଗାଁରେ ଗୋଟେ ଗାୟନ ଦଳ ଗଢ଼ିଛି । କେଉଁ ଗାଁରେ ପର୍ବ ହେଲା , ବାହାଘର , ଝିଅ ବିଦା ହେଲା , ସେଠି ପହଂଚି ସେ ଦଳ ଗାନ୍‌ଟାନ୍ କରୁଛନ୍ତି ।

ମୁଁ ଇନଫର୍ମର୍ ଜୁନୁସ୍ ଠାରୁ ଦାସୁର ଗାଁ ଗୁଡୁରିପଙ୍ଗା ଉପରେ ଜାଣିବାକୁ ଚାହିଁଲି ।

- ସେଠି ଗାଁ ଚୌକିଦାର ହେଉଛି ସର୍କାର । ଗାଁ ଦାଣ୍ଡରେ କାହିଁକି କାଦୁଅ ହେଲା , ଗାଁ ଲୋକ ଦୁଇଶହ ଟଙ୍କା ବାନ୍ଧ । ତୁମେ ଦି' ଭାଇ ମଦପିଇ କାହିଁକି ଲଢେଇ ଲାଗିଛ , ଥାନା ପାଇଁ ପଚାଶ ଟଙ୍କା ବାନ୍ଧ । ଫରେଷ୍ଟ ଗାର୍ଡ ଆସିବ ; ଗାଈ , ପୋଢ ପାଇଁ ଟଙ୍କାଏ ଟଙ୍କାଏ ନେବ , ଛେଳି ପାଇଁ ପଚାଶ ପଇସା ଆଦାୟ କରିବ , ନହେଲେ ବାନ୍ଧି ନେବ । ୱାର୍ଡମେମ୍ବର ବାର୍ଦ୍ଧକ୍ୟ ଭତା କରେଇ ଦେବ - ଟଙ୍କା ନେବ । ବିପିଏଲ୍ ପାଇଁ କାଗଜ କିଣାହେବ , ମୋହର ଲାଗିବ ଟଙ୍କା ନେବ । ସେଠି ଯେତକ କୁମୁଟି ସାହୁକାର , ତାଙ୍କରି ଘରେ ସର୍କାର ।

ମୁଁ ଆଖି ମିଟ୍‌ମିଟ୍ କରି ଦାସୁ ଆଉ ତା' ଗାଁ ଉପରେ ଜୁନୁସ୍ ଠାରୁ ଶୁଣୁଥିଲି । ସେ ଗାଁ ପାଇଁ ପାର୍ଟି ତା'ର ଜନମେଳି କାର୍ଯ୍ୟକ୍ରମ ହାତକୁ ନେଇନଥିଲା । ଦର୍କାର ହେଉଥିଲା ସେ ଗାଁ ପାଇଁ କେହି ଜଣେ ପାର୍ଟି ସପୋର୍ଟର । ସେ ଏରିଆରେ ପହଂଚିବା , ପାର୍ଟିର ଅର୍ଡ଼ର ନଥିଲା । ଦାସୁରାମକୁ ଭେଟିବି କି ନାହିଁ , ପାର୍ଟି ସହିତ ପରାମର୍ଶ ବାକି ଥିଲା । ମୋ କମାଣ୍ଡରକୁ ମୁଁ ଏ ବିଷୟରେ ଚିଠି ଲେଖିଲି । ଜୁନୁସ୍‌କୁ କହିଲି - ଆମ ଏରିଆ ଭିତରେ କା'ବାହାଘର , କି ପର୍ବରେ ଯଦି ଦାସୁରାମ୍ ଗ୍ରୁପ୍ ଗୀତ ଗାଇବାକୁ ଆସୁଛନ୍ତି , ମୋତେ ଖବର ଦିଅ । ସେ କୁଇ କବି ମଣିଷଟି ସହିତ ମୋର ମିଶିବାର ଅଛି । ତା'କୁ ଜାଣିବାର ଅଛି । ଯଦି ସେ ଲଢେଇ ଜାଗାରେ ଅଛି ମିଶିବି , ନଚେତ ଖସିବି ।

ଦାସୁ ସହିତ ମିଶିବା ପାଇଁ ମୋର ବ୍ୟାକୁଳତା ଲମ୍ବିଗଲା । ତା' ସହିତ ମୋ ବ୍ୟକ୍ତିଗତ ବ୍ୟାପାରଟି ମୋତେ ଅସ୍ଥିର କରୁଥାଏ । ସାରା ଗାଁ ଯେତେବେଳେ ଶୋଇପଡ଼େ , ଶୁଖିଲା ଶାଳପତ୍ର ଉପରେ ଅନ୍ଧାରରେ ଜଙ୍ଗଲି ପାଦଚଲା ରାସ୍ତାରେ ଚାଲେ , ମନେପକାଏ ମୋ ଭଲପାଇବା । ମୋର ବର୍ଷକର ଅପେକ୍ଷା । ଖାସୁ ହେବାର କଷ୍ଟ ଢୋକେ ।

ଦିନେ ସକାଳେ ଜୁନୁସ୍ ମୋତେ ଖବର ଦେଲା - ଅଡବା ଜଙ୍ଗଲର କୁଇ ସାହିରେ ଗୋଟେ ନାଚଗୀତ ହେବ । ସେଠିକି ଦାସୁଗ୍ରୁପ୍ ଆସୁଛନ୍ତି । ଶୁକ୍ରବାର ରାତି ।

ରାତି କେତେ ହେବ ? ଆଠଟା କି ନ'ଅଟା । ବଣର ରାତି ବେଳା ପୋକଙ୍କ ଗୀତ ଭିତରେ ସେ ଗାଁରେ ପହଂଚିଲି । ଦୂରରୁ ଶୁଭୁଥିଲା କୁଇ ଗୀତ ମିଳିତ କୋରସ୍ । ଚାଙ୍ଗୁ , ଘୁଙ୍ଗୁରର ଲହରିଆ ରିଦ୍ମ୍ । ସେ ଦଳକ ଭିତରେ ମୁଁ ତା'କୁ ଚିହ୍ନିନେଲି । ପ୍ରଥମେ ଗୀତର ମୁଖଡ଼ା ଧରୁଥିବା ସେ ଜୀର୍ଣ୍ଣଶୀର୍ଣ୍ଣ ବାଙ୍ଗରା କାଳିଆ ଚାଙ୍ଗୁଧରା ଲୋକଟାହିଁ ଦାସୁରାମ୍ ।

ଦାସୁଗ୍ରୁପ୍ ଗାଇ ଗାଇ ଚୁପ୍ ପଡିଲେ । ତା'ପରେ ସେ ଗାଁରେ ଧାଙ୍ଗଡ଼ା ଧାଙ୍ଗଡ଼ି ମାନେ ଆରମ୍ଭ କରିଦେଲେ ଅଟାକୁଅଟା ଧରି ନାଚଗୀତ । ସେମାନଙ୍କର ଗୀତବାଜାର ମଜଲିସ୍‌ରେ ମୁଁହ ଅନ୍ଧାରରେ ବସିଥାଏ । ଜୁନୁସ୍ ତା' କାନ ପାଖରେ କହିଲା - ପାର୍ଟିର ଲୋକ ଆସିଛନ୍ତି । ତୁମ ସହିତ କଥା ହେବେ ।

ଦାସୁ ଚାଙ୍ଗୁ ରଖି ଆସିଲା । ମୁଁ ଦିଗମ୍ବରର ନୂଆଣିଆ ବାରଣ୍ଡାରେ ଅନ୍ଧାରରେ ବସିଥାଏ । ଦାସୁ ପହଂଚି କହିଲା - ଆଜ୍ଞା ! ଜୁହାର ।

- ବସ , ବସ ଦାସୁ । ମୁଁ ତା' ହାତଧରି ପାଖରେ ବସେଇଲି ।

- ତୁମେ ଏ ବାହାଘର , ଝିଅବିଦା , ପର୍ବପର୍ବାଣୀ ଉପରେ ଗୀତସବୁ ଲେଖୁଛ । ତୁମେ କିଛି ନୂଆଗୀତ ଲେଖୁନ । ତୁମ କୁଇ ଲୋକ ଶୁଣିବେ । ସାହାସୀ ହେବେ । ଗୀତ ପାଇଁ ବଦଳିବେ ।

ଦାସୁ ଧରିନେଲା ମୋ କଥାର ଅର୍ଥ । କହିଲା

- ବିପ୍ଲବୀଗୀତ ତ ଆଜ୍ଞା ! ମୁଁ ବି ସେମିତି ଗୀତ ଲେଖିଛି । ହେଲେ କେଉଁଠି ଗାଇ ନାହିଁ । ଫୁଲବାଣୀ ଆଡର ଲୋକ - କବି କ୍ଲେମନ୍ତ ନାୟକ । ତାଙ୍କରି ଗୋଟେ ଚଟିବହି 'କୁଇ ଦିନା ପୁଙ୍ଗା' କିଣି ରଖିଛି । ସେ ଗୀତ ସବୁ ସେହି ପ୍ରକାର । ସେଥିରେ କୁଇ ଲୋକଙ୍କ ହକ୍ , ଲଢେଇ କଥାସବୁ ଗୀତରେ ଅଛି । 'କୁଇ ଦିନା ପୁଙ୍ଗା' (କୁଇ ଅଞ୍ଚଳର ଫୁଲ) ଗୀତ ସବୁ ପଢିଲାପରେ , ମୁଁ ଏବେ ସେମିତିକା ଗୀତ ଲେଖିଛି - ' ଗଜପତି ଜିଲ୍ଲା ତାଡ଼େ ସୁନା/ଗଜପତି ଦିନା ତାଡ଼େ ମୁଆଁ/ମାନ୍ଦରାଓ୍ୱାଜୁ ନାଡ଼େ ସୁନା/ରାବା ନାଜୁଙ୍ଗଦା ନାଡ଼େ ମୁଆଁ ।'

ମୋତେ ଇଂରାଜୀ , ହିନ୍ଦି , ଓଡ଼ିଆ , ତେଲୁଗୁ ଭାଷା ଜଣା । ପାର୍ଟି ପାଇଁ କାମ କରିବା ପରେ ଆଦିବାସୀ କୁଇ , ସୌରା ଭାଷା କିଛି କିଛି ବୁଝୁଛି । ଦାସୁର କୁଇ କବିତାରେ ରହିଥିଲା ସର୍କାରୀ ବ୍ୟବସ୍ଥା ପ୍ରତି ଥଟ୍ଟା । ମୁଁ ତା' ପିଠି ଥାପୁଡ଼ି କହିଲି - ବେଶ୍ ବେଶ୍ ।

ଦାସୁ ତା' କୁଇଭାଷା , ତା କୁଇଗୀତ ଉପରେ ଉତ୍ସାହିତ ହୋଇପଡିଲା - ଆମ କୁଇଗୀତ , ଭାଷା ଓ ନାଚର ପହିଲା ନମ୍ବର ଶତ୍ରୁ ଆମରି ଭିତରେ ଲୋକ । ଯେଉଁ ଡମ୍ବ , ହରିଜନମାନେ ଡୁବନ ମାରି ଖ୍ରୀଷ୍ଟିୟାନ ହେଉଛନ୍ତି , ଚର୍ଚ୍ଚରେ ଫାଦର ,

ସିଷ୍ଟରମାନେ ସେମାନଙ୍କୁ କହୁଛନ୍ତି - ଆମ ଧର୍ମରେ ତୁମ ନାଚ ଗୀତ , କୁକୁଡ଼ାବଳି ଚଳିବ ନାହିଁ । ତୁମ ନାଚଗୀତ କଲେ ଆମ ଠାକୁର ଯୀଶୁ ରାଗିବେ । ଯୀଶୁଙ୍କୁ କେବଳ ମାନ । ତାଙ୍କ ପାଇଁ ସକାଳ ସଞ୍ଜରେ ପ୍ରାର୍ଥନା କର । ଆଉ ହିନ୍ଦୁଭଳି ପଇତା ପକାଉଥିବା ଆମରି ଭିତରୁ ଦଳେ ତ ହିନ୍ଦୁ ଠାକୁରଙ୍କ ଭଜନ କାସେଟ ଆଣି ଗାଁରେ ବଜାଉଛନ୍ତି । ହିନ୍ଦୁ ପର୍ବପର୍ବାଣୀ କରି ମହୁଲି ପିଇ ଫିଲ୍ମଗୀତ ତାଳରେ ନାଚୁଛନ୍ତି । କହନ୍ତୁ , ଆମ ଭାଷା ଗୀତ ନାଚ ଆଉ ରହିବ ?

ମୁଁ ଦାସୁକୁ ଶୁଣୁଥାଏ । ଦେଖୁଥାଏ ଏହି କୁଇ ମଣିଷଟି ତା' ଭାଷା , ତା ଗୀତ ସହିତ ନିଜକୁ ହଜେଇ ଦେଇଛି । ବାରି ହୋଇପଡୁଥାଏ କିଛି କରିବାର ତା' ଗରମ୍ ନିଶ୍ୱାସ୍ । ତା' ହୃତପିଣ୍ଡରେ ସେହି ଧକ୍‌ଧକ୍ ।

- ଆମେ ଗାଁ ଲୋକଙ୍କୁ ବୁଝାଉଛୁ - ତୁମେ ହିନ୍ଦୁ ହୁଅ କି ଖ୍ରୀଷ୍ଟିୟାନ ହୁଅ ; ନିଜ ଭାଷା , ନିଜ ଗୀତକୁ ବୁଡାଇ ଦିଅନାହିଁ । ଆମେ ଆଦିବାସୀ । ଆମର ଆଦି - ଧର୍ମ । କେବଳ ସାହୁକାର ଆଉ ସର୍କାର ଭୋଟ ପାଇବା ପାଇଁ ଆମକୁ ହିନ୍ଦୁ ଖ୍ରୀଷ୍ଟିୟାନରେ ଭାଗ କରୁଛନ୍ତି ।

ସେହି କଳା ପତଳା କୁଇଟିର କଥାବାର୍ତାରେ ଭରି ରହିଥିଲା ଜଣେ ଖାଂଟି ଲଢୁଆ ଆଦିବାସୀର ଠୋସ୍ । ମୁଁ ଗୋଇନ୍ଦା ପରି ଜାଣିବାକୁ ଚାହିଁଲି - ତୁମ ଗ୍ରୁପ ଯେତେବେଳେ ଅନ୍ୟ ଗାଁକୁ ଗୀତ ଗାଇବାକୁ ନ ଯାଅ , ଲୋକଙ୍କ ପାଇଁ କି ଉପକାର କାମକର ?

- ଆମ ଗାଁ ଲୋକଙ୍କ ପାଇଁ ଯେଉଁ କାମ - ସେଟା କି ଉପକାରରେ ଯିବ ଆଜ୍ଞା ! ଆମ କୁଇଲୋକ ବଦଳିବେ । ଚାଲାଖ ଚତୁର ହେବେ । ନିଜ ଲୋକକୁ ଆମେ ବୁଝାଉ ।

- କ'ଣ ବୁଝାଅ ? ମୁଁ ଫଟରେଇ ପଚାରିଲି ।

- ଗାଁ ଲୋକଙ୍କୁ ଆମେ ବୁଝାଉ । ଗୁଣିଗାରେଡି ଉପରେ ବିଶ୍ୱାସ କରନା । ବାଘ ଦେବତା ଆମ ଗରିବ ଲୋକଙ୍କୁ କାହିଁକି ଖାଇବ ! ସାହୁକାର ଘରେ କାହିଁକି ଦେବତା ଲାଗେନି ? ଅନ୍ୟ ଗାଁରୁ ଗୁଣିଆ ଆସିଲେ ଆମେ ତାକୁ ଗୋଡେଇ ବିଦାକରି ଦେଉ । ଲୋକଙ୍କୁ ବୁଝାଉ - ତୋତେ ଜ୍ୱର ହୋଇଛି କ୍ଲୋରକୁଇନ୍ ଖା । ଗୁଣିଆ ଡାକେନା , କୁକୁଡ଼ା ବଳି ଦେନା । ଏ ଉପରେ ମୁଁ ବି ଗୀତ ଲେଖୁଛି ।

ମୁଁ ଜାଣିବାକୁ ଚାହିଁଲେ - ଆଉ ......

- ଆମର ବାହାଘର ବେଳେ ଧାଂଡା ଧାଂଡିକୁ କେନ୍ଦା (ଯୌତୁକ) ଦେଇ ବା' ହୁଏ । ଆମ ଧାଂଡାମାନେ ଗାଈ ବଳଦ , କଂସା ବାସନ କେନ୍ଦା ପାଇଁ ଯୋଗାଡ କରିବା

କଷ୍ଟ । ପୂର୍ବରୁ ତ ଯେଉଁ ଧାଂଡା କେନ୍ଦା ଦେଇପାରୁନଥିଲା , ଧାଂଡି ଘରେ ଗୋଟି ଖଟୁଥିଲା । ଗାଁ ଲୋକଙ୍କୁ ଆମେ ପ୍ରଥମେ ବୁଝାଇଲୁ । କେନ୍ଦାରେ ଗାଈବଳଦ କଂସାବାସନ ଉଠେଇଦିଅ । ପୁଅବାଲା ଝିଅଘରକୁ କିଛି ଟଙ୍କା ଯୌତୁକ ଦିଅନ୍ତୁ । ଝିଅ ମାମୁଁକୁ ବି ଟଙ୍କା କିଛି ଦିଅନ୍ତୁ । ଦେଖିଲୁ ଏଥିରେ ବି ଅସୁବିଧା । ଧାଂଡା କେନ୍ଦା ପାଇଁ ଟଙ୍କା ଯୋଗାଡ କରିପାରୁନି , ମହାଜନ ପାଖରେ ଜମି ବନ୍ଧାପକାଇ ବାହା ହେଉଛି । ବାହାଘର ପରେ ଉପାସ ଭୋକରେ ରହୁଛି । ଦାଦନ ହୋଇ ଗାଁ ଛାଡୁଛି । ଏବେ ଆମେ ଧାଂଡା ଧାଂଡିମାନଙ୍କୁ କହୁଛୁ - ଲଭ୍ ମ୍ୟାରେଜ କର । ଲଭ୍ ମ୍ୟାରେଜ୍‌ରେ କିଏ କାହାକୁ କେନ୍ଦା ଦିଏ ନାହିଁ କି ନିଏ ନାହିଁ । ଏବେ ଦେଖୁଛୁ ତ , ଏ ଲଭ୍ ମ୍ୟାରେଜ ଆମ ଭିତରେ ଧୀରେ ଧୀରେ ଚାଲିଲାଣି ।

ଦାସୁର ଯୌତୁକ ନିବାରଣ ଫର୍ମୁଲାରେ ରହିଥିଲା ତା' ଲୋକଙ୍କୁ ଅନ୍ଧବିଶ୍ୱାସଠୁ ଓହରେଇ ଆଣିବା ପାଇଁ ବୁଦ୍ଧିମତା । ଦାସୁର ହନୁହାତ ଦେଖାଯାଉଥିଲା । ଲକ୍ଷ୍ୟ କରୁଥିଲି , ତା' କୋରଡ ଆଖି ଡୋଳାରେ କଥା କହିଲା ବେଳେ ବିଜୁଳିପରି ଚକ୍‌ଚକ୍ କରୁଥିଲା । ମୁଁ ତାକୁ ତତେଇଲି - ଶୁଣୁଛି , ତୁମ ଏରିଆରେ ଫାଣ୍ଡି ଚୌକିଦାର ହେଉଛି ସର୍କାର । ଆଗେ ସେ ଚୌକିଦାରର ରାସ୍ତା ରୋକ । ଚୌକିଦାର ଥାନାକୁ କେଶ୍ ନେଲେ ସିନା ପୋଲିସ୍ ଆସି କେଶ୍ କରିବ ବୋଲି ତୁମକୁ ଧମ୍‌କେଇବ , ପଇସା ବାନ୍ଧିବ । ନିଜ ଗାଁର ଗଣ୍ଡଗୋଳ ନିଜ ଗାଁରେ ସମାଧାନ କର । ପୋଲିସର ପାଣି ମାର ।

- ଠିକ୍ କହିଲେ ଆଜ୍ଞା

- ଶୁଣୁଛି , କୁମୁଟି ମହାଜନ , ଶୁଣ୍ଡି ମଦ ବେପାରୀ ସବୁ ସେଠି ବଳିୟାନ । ତୁମେ ଗାଁ ଲୋକଙ୍କୁ ବୁଝାଅ -ଯିଏ ମଦ ପିଇବ , ସିଏ ମହୁଲ ତୋଳୁ । ରାନ୍ଧୁ । ପିଉ । ଶୁଣ୍ଡିଠାରୁ ଜମିବାଡ଼ି ବନ୍ଧା ଦେଇ ମଦ ପିଅ ନାହିଁ । ସଲପ୍ ଗଛ ଲଗାଅ । ନିଜେ ସଲପ ପିଅ , ଅନ୍ୟକୁ ବାଂଟ । ମଦ କିଣି ପିଅନାହିଁ , ତିଆରି କରି ପିଅ । କୁମୁଟି , ଶୁଣ୍ଡିଙ୍କ ତାକତ୍ ଭାଙ୍ଗ ।

ପାର୍ଟିର ସଚ୍ଚା କମ୍ରେଡ଼ ପରି ପ୍ରତିବାଦ ପାଇଁ ନିଜ ଉତେଜନା ଦାସୁ ଉପରେ ଲଦି ଦେଉଥିଲି । ତା' ଭିତରେ ଭରୁଥିଲି କିଛି କରିବାର ଆତ୍ମବିଶ୍ୱାସ । ମଦପିଇ ତା' ପରିବାରର ମୁରବୀମାନେ ବରବାଦ୍ ହୋଇଯିବାର ନଷ୍ଟ କଷ୍ଟ ଭୋଗୁଛି ଦାସୁ । କହିଲା - ମୁଁ ବି ଆଜ୍ଞା , ଆମ ଲୋକଙ୍କୁ ବୁଝାଇବା ପାଇଁ ମଦ ବିରୋଧରେ ଗୀତ ଲେଖିଛି ।

ବେଶ୍ , ସେଇଠି ଧୀମା ସ୍ୱରରେ ଦାସୁ ଆରମ୍ଭ କରିଦେଲା ତା ଲେଖିଥିବା ଗୀତ -

ମଦପିଇ ଲୋକେ ତୁମେ ନଷ୍ଟ ହେଲ

ଜମିବିକିଲ , ତୁମେ ପଦର୍ ବିକିଲ
ଅଜା ଅମଳର ଜମି ବିକିଲ , ସୁନା , ରୂପା ବିକିଲ ,
ଅଜା ଅମଳର ଜମି ବନ୍ଧକ ଦେଲ ।
ମଦପିଇଛ ବୋଲି ନିଶ ମୋଡୁଛ
ମଦପିଇ ନିଜକୁ ଧନୀ କହୁଛ
ଛିଣ୍ଡାଲୁଗା ଅଂଟାରେ ଖୋସି ବୁଲୁଛ ।
ଧୂଳିଧୂସରିଆ ରୂପ ହୋଇଛ
ଛପରେ ନ କରି ଘରେ ରହୁଛ
ଚନ୍ଦ୍ରସୂର୍ଯ୍ୟଙ୍କ ଛାଇ ଦେଖୁଛ ।
ଯିଏ ମଦ ପିଇଲା - ତା' ସ୍ତ୍ରୀ କୁଲିରେ ଗଲା
ଯିଏ ମଦ ପିଇଲା - ସେ ତା'ସ୍ତ୍ରୀର ମଜୁରୀ ଟଙ୍କା ଛଡାଇନେଲା
ସ୍ତ୍ରୀ ମଜୁରୀର ଟଙ୍କାରେ ମାତାଲ ହେଲା
ଯିଏ ମଦ ପିଇଲା ତା ସ୍ତ୍ରୀ ଜୀବନ ଦେଲା
ଯିଏ ମଦ ପିଇଲା - ସାହୁକାର ଘରେ ବନ୍ଧକ ହେଲା
ଯିଏ ମଦ ପିଇଲା - ସାହୁକାର ଘରେ ଗୋତି ଖଟିଲା ।

ଦାସୁର ସ୍ୱରରେ ଭରି ରହିଥିଲା ଗୋଟେ ପୁରୁଣା ବଣୁଆ ପରମ୍ପରା ଉପରେ କୁହୁକ ପ୍ରତିବାଦ । ଏଠି ସେଠି ବୁଲାଉଥିବା ତା' ଗାୟନ ଦଳର ପିଲାମାନେ ନିଦଭାଙ୍ଗି ସେଠି ପହଂଚିଗଲେ । ତା' ସୁରରେ ସୁରମିଳେଇ ସେ ମଦଗୀତରେ ଭରିଲେ ମିଠାସ୍ । ଭୋର୍‌କୁ କଲେ ମାତ୍‌ବର ।

ଏହାପରେ ସେମାନେ ଗୁଡୁରିପଙ୍କା ଫେରିଯିବେ । ସେ ଦଳକ ଭିତରେ ମୁଁ ଦାସୁକୁ ବାଛିଲି । ତା' କାନ୍ଧରେ ହାତରଖି କହିଲି - ତୁମେ ତୁମ ଲୋକଙ୍କ ପାଇଁ ଗୀତ ଲେଖିଛ । ତୁମ ଲୋକଙ୍କ ପାଇଁ ଲଢ । ଗଜପତି- ରାୟଗଡ଼ାରେ ଚାଷୀ ମୂଲିଆ ସମିତି ସବୁ କାମ କରୁଛନ୍ତି । ତା'ର ଗୋଟେ ମେମ୍ବର ହୋଇଯାଅ । ସେହିମାନେ ତୁମକୁ ବତାଇଦେବେ - ତୁମ ଗାଁରେ କିପରି ମେଳିଆ ବାନ୍ଧିବ । କି ପ୍ରକାର ମେଳିଆ ଗୀତସବୁ ଲେଖିବ । ତା'ପରେ ଯାଇଁ ତୁମେ ଲଢୁଆ ହେବ । ଲିଡର ହେବ ।

- ହେବି ଆଜ୍ଞା ।

ଦାସୁ ଗୁଡୁରିପଙ୍କାର ଏକମାତ୍ର ମାଇନର ପାଶ୍ ଶିକ୍ଷିତ ପିଲା । ଲିଡର ହେବାର ଉଷୁମ ସେ ବୁଝିଲା । କୁଇ ଲୋକଙ୍କ ପାଇଁ ଆହୁରି ଗରିବ , ଆହୁରି ସାହାସୀ ହେବାକୁ ସେ

ନିଆଁ ଭିତରକୁ ଯେପରି ଓହ୍ଲେଇ ଯିବାକୁ ତୟାର । ସେମିତି ତର୍‌ତରରେ ତା' ଗାୟକୀ ଦଳ ସହ ଅଡବା ଜଙ୍ଗଲ ଛାଡି ତାଙ୍କ ଗାଁ ଯିବାକୁ ଡଙ୍ଗର ରାସ୍ତା ଧରି ନେଲା ।

ଯା'ପରେ ଏ ସରଳ ଆଦିବାସୀ କୁଇକବିର ଜୀବନରେ ସବୁଠୁ ବଡ ବିପର୍ଯ୍ୟୟ ଆସିବ । ମୁଁ ଆକଳନ ଲଗାଇଲି , ତା' ଜୀବନ ପ୍ରତି ବିପଦର ବାଦଲ ଢାଙ୍କିବ । ନିର୍ଯ୍ୟାତିତ ହେବ । ଫଳରେ ପାର୍ଟି ପାଇଁ ଆହୁରି ସିଦ୍ଧ ହେବ । ଆହୁରି ହେବ ଇସ୍ପାତ ।

ସେତେବେଳେ ପାର୍ଟିରୁ ଅଡର ଆସିଲା - ମୋତେ ଗଜପତି ଛାଡି ରାୟଗଡ଼ା ଯିବାକୁ ହେବ ।

ମୋର ମନେ ହେଲା , ମୋ ବାହାଘର ଆଉ ବାହା ହବାପାଇଁ ଅପେକ୍ଷା ବ୍ୟାପାରଟି ପାଇଁ ମୋତେ ଯେପରି ବାରମ୍ବାର ଜାଗା ବଦଳାଇବା ପାଇଁ କମାଣ୍ଡର ଅଡର ଦେଇଚାଲିଛି । ଆନ୍ଧ୍ର-ଓଡ଼ିଶାର ବର୍ଡ଼ର । ବର୍ଡ଼ର ସେପାଖରେ ଗେରିଲା ବାହିନୀରେ ଲଢୁଛି ମୋର ଭଲ ପାଇବା ।

ମୁଁ ମୋ ଭଲ ପାଇବାକୁ ଏମିତି ବେଳେ ଝୁରିହୁଏ , ଯେତେବେଳେ ଭଲପାଇବା ପାଇଁ ମୁଁ ଦଣ୍ଡ ଭୋଗେ ।

ପକେଟ ଡାଏରୀରୁ ଚାରିଭାଗ ହୋଇ ରହିଥିବା ଗୋଟେ ପୁରୁଣା ଚିଠି କାଢିଲି । ଏ ଭିତରେ ଆନ୍ଧ୍ର ଆଡର ମେସେଂଜରଟେ ପାଇନି । ଲେଖା ହେବାର ଦୁଇତିନି ମାସ ବିତିଗଲାଣି । ପ୍ରାପକ ପାଖରେ ପହଂଚି ପାରିନି ଏ ଚିଠି । ଜଙ୍ଗଲ ସେପାଖରେ ପୋଷ୍ଟଅଫିସ , କୋରିୟର , ପେ-ଫୋନ୍ ଠୁ ଇଂଟରନେଟ୍ । ମୁଁ ଜଙ୍ଗଲ ଭିତରେ ପ୍ରେମ ଚିଠିଟିଏ ପକେଟରେ ଧରି ବୁଲୁଥାଏ । ମୋତେ ମିଳୁନଥାଏ ଗୋଟେ ମେସେଂଜର ।

ଦିନେ ଇନ୍‌ଫରମର୍ ବିର୍‌ସା ମୋତେ ଖବର ଦେଲା - ମାଣ୍ଡିମେରାକୁ ଆସିଛି ଆନ୍ଧ୍ର ଆଡର ମେସେଂଜର ସୁବାରାଓ । ମୁଁ ସବୁ ପ୍ରୋଗ୍ରାମକୁ ପଛରେ ପକେଇ ଜଙ୍ଗଲରେ ଜଙ୍ଗଲରେ ଅଡ଼ବାରୁ ମାଣ୍ଡିମେରା ଧାଇଁଲି । ଏହା ସତ ଯେ , ଏହି ସବୁ ବ୍ୟକ୍ତିଗତ ଚିଠି ଲେଖା , ଚିଠି ପଠା ମାନେ ତୁମେ ପାର୍ଟିରେ ରହି ସମୟ ବରବାଦ୍ କରୁଛ । ତଥାପି ପାର୍ଟିରେ ଆମେ ଯେତେ ପ୍ରେମୀ ଧାଡିଏ , ଦି' ଧାଡି ଚିଠି ପାଇଁ ବରବାଦ କରୁ ମାସ ମାସ ।

ସୁବାରାଓ ହାତରେ ଚିଠି ପଠାଇବା ପୂର୍ବରୁ ପୁଣିଥରେ ସେ ପୁରୁଣା ଚିଠିରେ ଆଖି ପକେଇନେଲି । ଚିଠିର ବିଷୟଟା ଲାଗିଲା ବେକାର । କିଏ ଜାଣେ ଏ ଚିଠି କେବେ ପହଂଚିବ ? କେବେ ତା'ର ଉତର ମୋତେ ମିଳିବ ? ତାକୁ ପାଇବା ପାଇଁ ମୁଁ ତର୍‌ତର୍ ଥିଲି । ଭାବୁଥିଲି ବର୍ଷକର ସମୟ ଯେପରି ସରି ସରି ଯାଉଛି । ତା' ଆଗରୁ ମୁଁ ଖାସୁ ହୋଇଯିବା ବି ଦର୍କାର । ଏହି ଖାସୁ ହେବାର ଭୟ ଆଉ ବ୍ୟର୍ଥତା ମୋତେ ଅନେକ

ଦିନରୁ କଟ୍ କଟ୍ କରି କାଟୁଛି । ଜହ୍ନରାତିରେ ଯେତେବେଳେ ମୁଁ ଜଙ୍ଗଲରେ ମୋର ଯାତ୍ରା ଆରମ୍ଭ କରିଦିଏ , ଗଛରୁ ସୁଖିଲା ପତ୍ରଟେ ପବନରେ ଖସିପଡିଲେ , ମନେହୁଏ ମୋ ଦେହରୁ ଯେପରି ଖସି ପଡୁଛି ମୋ ଯୌନାଙ୍ଗ । ଦେହରେ କଂଟେଇ ଆସେ ଝାଳ ।

ପାର୍ଟି ସିନିୟରଙ୍କ ଠୁ ଗୋଟାଏ କଥା ଶିଖିଥାଏ - ତୁମେ କଠିନ ସମୟ ଦେଇ ଯାଅ , କଠିନ ରାସ୍ତା ଅତିକ୍ରମ କର । ତାପରେ ଶତ୍ରୁକୁ ହାତରେ ନ ମାରିପାରିଲେ ଭାତରେ ମାର । ସେ ପଇଁ ଶାରିରୀକ , ମାନସିକ ପ୍ରସ୍ତୁତ ରୁହ ।

ମୁଁ ପ୍ରସ୍ତୁତ ।

ଯେଉଁଟା ମୋତେ ଟେନସନ୍ ଦେଉଛି , ସେଟା ସାଫ୍ ହୋଇଯିବା ବି ଦର୍କାର । ସୁବାରାଓ ଆଗରେ ମୋ ପୁରୁଣା ଚିଠିଟା ଚିରିଦେଲି । ଲେଖିଲି ଗୋଟେ ନୂଆ ଚିଠି - 'ମୋ ଅପେରେସନ୍ ଦୁଇମାସ ଭିତରେ ଶେଷ କରିଦେବାକୁ ଠିକ୍ କରିଛି । ପାର୍ଟି ଠୁ ଛୁଟିନେଇ ମୋ ପାଖରେ ପହଂଚିଲେ ମୁଁ ସେ କାମଟି ସାରିବି । ଲାଲ୍ ସଲାମ୍ ।'

ସୁବାରାଓ ଚିଠି ନେଇଗଲା । ତା'ପରେ ଖାସୁ ହେବାର ଭୟ ମୋ ଭିତରୁ ଅଧେ କମିଗଲା । ଗଜପତି ଏରିୟାରୁ ମୋ ବସ୍ତାନି ଉଠେଇଲି , ଚାଲିଲି ରାୟଗଡ଼ା ।

ପାର୍ଟିର ମାସ୍-କଂଟାକ୍ଟ କାମରେ ଜଙ୍ଗଲରୁ ଜଙ୍ଗଲ ମୋ ପଦଯାତ୍ରାଟା ମୋତେ ବେଳେ ବେଳେ ଲାଗେ ନିରସ ଆଉ ନିଃସଙ୍ଗ । ହେଲେ ଯେଉଁ ଆଦିବାସୀ ଘରେ ରାତିରେ ମୋ ରହିବା ସ୍ଥିର ହୁଏ , ସେ ପରିବାର ସହିତ ମିଶିଗଲା ପରେ , ଲାଗେ ମୁଁ ନିଜ ପରିବାରରେ ଅଛି । ଏ ପରିବାର ପାଇଁ ମୁଁ କାମ କରୁଛି ।

ପାଣ୍ଡୁତାଲା ଗାଁରେ ଶ୍ରୀନୁ ଘରେ ଅନେକ ଦିନ ରହିବା ପରେ , ଦିନେ ଖବର ମିଳିଲା କୋଲନରାରେ ଚାଷୀ ମୂଲିଆ ସମିତିର କମିଟି ଗଢାହେବ , ସେଇଠିକି ଆସିବ ଦାସୁରାମ୍ ।

ଦାସୁ ଯଦି ପାର୍ଟିର ହାତ ଧରି ଗଜପତିର ଗୁଡୁରିପଙ୍କାରୁ ରାୟଗଡ଼ାର କୋଲନରା ପାଖରେ ପହଂଚିଗଲା , ମୁଁ ପାଣ୍ଡୁତାଲା ଗାଁରେ ବସିବି କାହିଁକି ? ଯିବି , ଦାସୁକୁ ଭେଟିବି । ଦିନେ ବାହାଘର , ଝିଅ ବିଦା ଗୀତ ଲେଖି ଗାଉଥିବା ସେ କୁଇ କବିଟି ଯା' ଭିତରେ ତା' ଗୀତ ପାଇଁ କେତେ ନିଜେ ଜଳିଛି , କେତେ ନିଆଁ ହୋଇ ଜାଳିଛି - ଯିବି , ଶୁଣିବି ତା' ଗୀତ ।

ଶ୍ରୀନୁ ସହିତ ଜଙ୍ଗଲରେ ଦଶବାର କିଲୋମିଟର ଚାଲିବା ପରେ କୋଲନରା ଗାଁ ପାଖରେ ଅନ୍ଧାର ହୋଇଗଲା । ଗାଁ ମୁଣ୍ଡର ପଣସ ବାଗନାରେ ଚାଷୀ ମୂଲିଆ ସମିତିର ମିଟିଙ୍ଗ୍ ଚାଲିଥାଏ । ରାୟଗଡ଼ା ଜୋନ୍‌ର ପାର୍ଟି କମାଣ୍ଡର , ଆଖପାଖ ଗାଁରୁ ମେମ୍ବରମାନେ

ଆସିଥିଲେ । ପବନଙ୍କୁ ଯେପରି ମାଲୁମ୍ ପଡିବନି , ଚାଲିଥିଲା ଆଗାମୀ କାଲି ପାଇଁ ପାର୍ଟିର କାମ ଓ ଦାୟିତ୍ୱ ବଂଟା ଉପରେ ଆଲୋଚନା । ପଡ଼ିଥିଲା ଗୁଣୁପୁର ପଲଟିକାଲ୍ ସିଚ୍ୟୁଏସନ୍ , ଗୁଡ଼ାରୀର ଜମି ଆନ୍ଦୋଳନ କଥା । ଶେଷରେ ଡକାପଡିଲା - ଦାସୁରାମ୍ ।

ଦାସୁରାମ ଉଠି ଛିଡ଼ା ହେଲା । ପତ୍ରରଙ୍ଗର ଲୁଙ୍ଗିକୁ କଛାମାରି , ତା'ଭିତରେ ବେନିୟନ୍ ଇନ୍ କରିଥିଲା ଦାସୁ । ମଥାରେ ବାନ୍ଧିଥିଲା ପାର୍ଟିର ଲାଲ୍ କପଡା । ସେମିତି ନହନହକା କମ୍ ଉଛତା ଚବିଶ ବର୍ଷର ଦାସୁରାମ୍ ନିଜ ଛାତି ପାଖକୁ ଟେକି ଧରିଲା ତା' ଚାଙ୍ଗୁ ।

ତା'ର 'ରଣ୍ଡିଆନା' କୁଇ ଗୀତରେ ଭାଙ୍ଗିଦେଲା କୋଲନାରା ଜଙ୍ଗଲର ନିସ୍ତବ୍ଧତା -

ଆମ କୁଇ ଭାଷା ଆଉ ଏ କୁଇ ମୁଲକ
ତା'ର ରକ୍ଷା ପାଇଁ ଆସ ହେବା ଆଜି ଏକ୍ ।
ରାୟଗଡ଼ା ଗଜପତି ଫୁଲବାଣୀ ଲୋକ
ଆସରେ ସଭିଏଁ ଆସ , ହେବା ଆମେ ଏକ
ଆସ ଆସ କୁଇଲୋକ ଗଢିବା ଏ ସଂଘ
ଆବା ଆୟା ପୁଅଝିଅ ଦିଅ ଏଥି ଯୋଗେ
ଆମେ ନ ପାଇବା ଲୋକ ଆସ ହେବା ଏକ
ଜଙ୍ଗଲ ଉପରେ ଆମ ଜନ୍ମଗତ ହକ୍
ଚାଲ ଆଜି ସେ ପାଇଁ ଉଠାଇବା ହାତ
ଆଉ କେ ମାରିବନି ଆମ ପେଟେ ଲାତ୍ ।

ମିଟିଙ୍ଗ୍ ଜାଗାରୁ ଡିମାଣ୍ଡ ଆସିଲା - ଆଉ ଗୋଟିଏ ଗୀତ ହେଉ । ଦାସୁ ତା' ସ୍ୱରକୁ ତେଜ୍ କଲା । ତା' ଗରମ ନିଶ୍ୱାସ ସହିତ ଗୀତର ଲହରକୁ ଫେଁଟି ଦେଲା । ଚାଙ୍ଗୁ ତାଳରେ କାଉଁରିଆ କାଠି ପରି ଦାସୁ ତା' 'ବ୍ବେନ୍ଦା ସର୍କାର' ଗୀତ ଲହରାଇଲା -

ଏ ଠକ ସର୍କାର , ପୁଲିସମାନେ ଚୋର
ଏ ରାଜା ଠକ , ମନ୍ତ୍ରୀ ଯେ ଟାଉଟର
ଗାଁଆକୁ ଗାଁ ଆସି ଚୋରାନ୍ତି ଡାବୁ
ନେଇଯାଆନ୍ତି ଆମ ପୋଷାକୁକୁଡ଼ା ସବୁ
ଯେତେ କୁହ ପଛକେ ଶୁଣନ୍ତି ନାହିଁ କିଛି

ରଙ୍କାଣୀ କୁକୁର ସେ ବୁଝନ୍ତି ନାହିଁ କିଛି ।
ଦେଶର ଅଛୁ ଯେତେ ଗରିବ ଲୋକ
ପୃଥ୍ୱୀରେ ଅଛୁ ଯେତେ ନଥିବା ଲୋକ
ଏ ଠକ ସର୍କାରକୁ ଯୁଝିଲେ ଯାଇଁ ମୁକ୍ତି
ଏ ଚୋର ପୁଲିସ୍‌କୁ ମାରିଲେ ଯାଇ ଗତି ।

ତା' 'ବେନ୍ଦା ସର୍କାର' ଗୀତରେ ଭରିରହିଥିଲା ବ୍ୟବସ୍ଥା ପ୍ରତି ଘୃଣା ଆଉ ଉତେଜନା । ସେଠାରେ ଠୁଳ ହୋଇଥିବା କୁଇ , ସୌରା ମାନେ ତା' ଗୀତରେ ତାଳଦେଇ ଗାଉଥିଲେ । ତା' ଗୀତକୁ ସମର୍ଥନ କରି ଉପରକୁ ଉଠାଉଥିଲେ ଧନୁତୀର , ଫାର୍ସା , ଲାଠି ଆଉ ବଂଶୀ । ନିଜ ଲୋକଙ୍କ ବଂଚିବା ପାଇଁ ଲଢେଇର ଗୀତର ହତିଆର ପଜେଇ ଦାସୁ ନିଆଁ ଭିତରେ ଡହଡହ ଛିଡା ହୋଇଥିଲା । ତା' ପରଦିନ ଗଜପତିକୁ ଫେରିଲା ବେଳେ ଦାସୁକୁ ପଚାରିଲି - ଏବେ ତୁମ ଏରିୟାରେ ସବୁ ଭଲ ତ ।

- ଭଲ କ'ଣ ଆଜ୍ଞା । ଏହି ଗୀତ ସବୁ ଲେଖୁଛି ଗାଉଛି , ଚାଷୀ ମୂଲିଆ ସମିତିରେ ଅଛି ବୋଲି ଆମ ଗାଁ ଉପରେ ମାଣ୍ଡିମେରା ଥାନାବାଲାଙ୍କ ନଜର । ପୋଲିସ୍ ମୋ ପିଛା ଲାଗିଛି । ମୋତେ ଥାନାକୁ ଡକାହୋଇ ଧମ୍‌କା ହେଉଛି - ଗୀତ ଲେଖା ବନ୍ଦ କର । ଗୀତ ଗାଇବା ବନ୍ଦ କର । ମୁଁ ବନ୍ଦ କାହିଁକି କରିବି ଆଜ୍ଞା । ସେମାନେ କହିବେ - କଥା କହିବା ଛାଡ଼୍ । ମୁଁ ଛାଡ଼ିପାରିବି ?

ଦାସୁର ପ୍ରତିବାଦ ଶୁଣି ମୋତେ ଭଲ ଲାଗିଲା । ମୁଁ ଜାଣେ ପାର୍ଟିରେ ତା'ର ପ୍ରାଥମିକ ଶିକ୍ଷା ଆରମ୍ଭ ହୋଇଯାଇଛି । ସେ ତା' ଗୀତ ଆଉ ଗାୟକୀ ଦଳକୁ ମଜଭୁତ କରିଛି । ଯା' ଭିତରେ ଦାସୁରାମ୍ ବି ହୋଇଯାଇଛି ଚାଷୀ ମୂଲିଆ ସମିତିର ରାୟଗଡ଼ା-ଗଜପତି ଡିଭିଜନାଲ୍ କମିଟିର କନ୍‌ଭେନର ।

ଏଇ ଦାସୁରାମ ଉପରେ ଶୁଣିଥିବା ତା' ନିରୀହ କିଶୋର ଦିନର ଗୋଟେ ଘଟଣା ମନେପଡିଲା । ଦିନେ ଦାସୁ ଏକା ଡଙ୍ଗରରେ ଚାଲିଥିଲା । ଡଙ୍ଗର ତଳ ରାସ୍ତାରେ ଦେଖିଲା ଗାଁ ଗାଁ ହୋଇ ବଡ ଜନ୍ତୁଟିଏ ଅଧା ମଣିଷଟିଏ ଗିଳି ଧାଇଁ ଚାଲିଥିଲା । ଏପରି ବଣୁଆ ଅଦ୍‌ଭୁତ ଜନ୍ତୁଟିଏ ଆଗରୁ ସେ ଦେଖିନଥିଲା । ଗାଁରେ ତା' କଥାକୁ କିଏ ବିଶ୍ୱାସ କଲା କିଏ କଲାନି । ଆଉ ଦିନେ ଦାସୁ ସହିତ ସୁବାସ୍ ମଧ ଜଙ୍ଗଲରେ ଥାଏ । ସେମାନଙ୍କ ଆଗରେ ଗାଁ ଗାଁ ଶବ୍ଦ ଶୁଭିଲା - 'ଏହି ମଣିଷ ଗିଳା ଜନ୍ତୁ ଆସିଗଲା' - କହି ଦାସୁ ପ୍ରାଣ ବିକଳରେ ଚିତ୍‌କାର କରି ଗଛ ଉପରେ ଚଢ଼ିଗଲା । ଦାସୁର ବୋକାମୀ ଉପରେ ସେଦିନ ହସିଥିଲେ ସୁବାସ । ସେ ଛିଗୁଲେଇ ଦେଲା - ଆରେ ବୁଦ୍ଧୁ ! ଏ ଜନ୍ତୁ ନୁହେଁ - ମଟର

ଗାଡି । ମଣିଷକୁ ଅଧେ ଗିଳିଛି ବୋଲି ଯାହା ଦେଖୁଛୁ - ସେ ମୋଟର ଗାଡ଼ିର ଡ୍ରାଇଭର ।

ଦିନେ ମୋଟର ଗାଡିକୁ ମଣିଷଗିଳା ଜନ୍ତୁ ବୋଲି ଭାବି ଯିଏ ଡରୁଥିଲା , ସିଏ ଏବେ ପାର୍ଟିର କନ୍‌ଭେନର୍ । ସେଇଠି ମୋର ଭୋଲଟେୟାରଙ୍କ ପଦେ କଥା ମନେପଡିଲା! - 'ବିପ୍ଳବ ଗୋଟେ ଅଣ୍ଡା' । ମୁଁ ପାଦେ ଆଗେଇ ଯାଇ ଭାବିଲି , ସେହି ଅଣ୍ଡାରୁ ଛୁଆଫୁଟି ଏବେ ବାହାରକୁ ଆସିଛି ଯିଏ - ସେହି ତ ଏ ଦାସୁରାମ୍ ।

ପାର୍ଟି କାମରେ ଲାଗିବା ପାଇଁ ଏ କୁଇ , ସୌରା , କନ୍ଧ , ସାନ୍ତାଳ ପିଲାଙ୍କ ଭିତରୁ ଟାଲେଂଟମାନଙ୍କୁ ବଛାଯାଏ । ପାର୍ଟି ଟ୍ରେନିଂ ଦିଏ । ବନାଏ କମ୍ରେଡ୍ । ପାର୍ଟିରେ ମୋର ସେହି ପ୍ରଥମ ପ୍ରଥମ ଟ୍ରେନିଂ ଦିନ ସବୁ ମନେ ପଡିଲା , ବନ୍ଧୁକ ଚଳାଇବାର ଟ୍ରେନିଂ , ମୋଟିଭେଟେ ଭାଷଣ ଦେବାର ଟ୍ରେନିଂ , ଆଦିବାସୀ ଭାଷା ଶିଖିବାର ଟ୍ରେନିଂ , ତା'ସହିତ କଠିନ ମେହନତ , ସତର୍କ ଚଳଣିର ଦିନସବୁ । ହଗି ବସିଥାଅ କି ଖାଉଥାଅ , କାନ୍ଧରେ ଥିବ ବନ୍ଧୁକ । ଟ୍ରେନର୍ ଗୋଟିଏ କଥା କୁହେ , ବନ୍ଧୁକ ଧରିବା ମାନେ , ମନରେ ରଖ ଏକାଗ୍ରତା , ଆଖି ଆଗରେ - ଲକ୍ଷ୍ୟ ।

ସେହି ବନ୍ଧୁକ ଚଳାଇବା ଦିନରେ ମନ ଭିତରେ ଯେତେବେଳେ ଦୃଢ଼ତା , ନଜରରେ ଟାର୍ଗେଟ୍ , ତା' ଭିତରେ କେଉଁ ଛଟକରେ ନିଜ ଭିତରକୁ ପଶିଆସିଲା - ଭଲପାଇବା । ଗୋଟେ ଆକ୍ସନ ଗ୍ରୁପ୍‌ରେ , ଗୋଟେ ପ୍ରକାର ୟୁନିଫର୍ମରେ, କାନ୍ଧରେ ବନ୍ଧୁକ ପକେଇ ସାଙ୍ଗ ହୋଇ ଜଙ୍ଗଲରେ ହଜିବା ଦିନ । ସେ ସମୟ , କି ତାରିଖ କି ଦିନ ଥିଲା ମନେନାହିଁ । ଡଙ୍ଗରରେ ପୋଡୁଚାଷ ପାଇଁ ଲାଗିଥିବା ନିଆଁ ଆଡେ ଚାହିଁ ଦୁହେଁ ନିଷ୍ପତି ନେଇଥିଲୁ -ପାର୍ଟିରେ ରହି ସଂସାର ବାନ୍ଧିବାର ନିଷ୍ପତି । ତା'ପରେ ମୋର ଖାସୁ ହେବାର କଥା ।

ଖାସୁ ହେବାକୁ ନିରାପଦ ଜାଗାଟେ ଯେତେବେଳେ ଖୋଜୁଛି , ଆନ୍ଧ୍ର ଆଡରୁ ଆସିଥିବା ମେସେଞ୍ଜର ଠୁ ମିଳିଗଲା ମୋ ଚିଠିର ଉତର । ସେ ତା'ର ଅପରିଷ୍କାର ଅକ୍ଷରରେ ଲେଖିଥିଲା ତା' ସଫା ପ୍ରେମର ଉତର - 'ମୁଁ ଚାହେଁ ଶୀଘ୍ର ତୁମେ ଆକ୍ସନକୁ ଫେରିଆସ । ଗୋଟେ ଗ୍ରୁପ୍‌ରେ କାମ କରିବା ଆମ ପାଇଁ ସାହସ ଓ ଜରୁରୀ । କେବେ କେଉଁଠି ଅପରେସନ୍ । ଲେଖି ପହଂଚିବି । ଲାଲ୍ ସଲାମ୍ ।'

ତା'ଚିଠି ପାଇଲା ପରେ ମୋ ଛାତି ଭର୍ତି ଖୁସି । ନିଜର ଉଦାସୀନତା ଭାଙ୍ଗି ହେଲି ଚଂଚଳ । ଯଦି ସେହି କାମଟା ପାଇଁ ତାକୁ ଦିନେ ଦୁଇଦିନ ପାଖରେ ପାଏ , ତେବେ ସେ କାମଟି ପାଇଁ ଡେରି କାହିଁକି ? ସେହି ମେସେଂଜର ହାତରେ ଚିଠି ଦେବା ପାଇଁ ଲେଖିଲି

- ପନ୍ଦର ଦିନ ପରେ ଗୁଣୁପୁର କମ୍ରେଡ୍ ଇଂଜିନିୟର ଘରେ ପହଂଚ । ପହଂଚିଲେ ଅପରେସନ୍ ।

ଗୁଣୁପୁରର ସେହି ପାର୍ଟି ସପୋଟର ବନ୍ଧୁଟି ଗୋଟେ ନିଛାଟିଆ କଲୋନୀରେ ଘରଭଡା ନେଇ ରହୁଥିଲା । ସାଙ୍ଗରେ ତା'  ସ୍ତ୍ରୀ , ପାରାଲିସିସ୍‌ରେ ବିଛଣା ଲଗା ତା' ବାପା । ସେ ଗୋଟେ ପ୍ରାଇଭେଟ୍ କଂପାନୀରେ ନାମକୁ ମାତ୍ର ଦରମାରେ ଇଂଜିନିୟର ଭାବେ କାମ କରୁଥିଲା । ଅଧାରୁ ଅଧିକ ଦରମା ପାର୍ଟି କାମରେ ଖର୍ଚ୍ଚ କରୁଥିଲା । ସେ ଚାରୁ ମଜୁମ୍‌ଦାରର ଭକ୍ତ ଥିଲା । ସଶସ୍ତ୍ର ବିପ୍ଳବ ଚିନ୍ତନ ସବୁ ପାର୍ଟିର ବିଭିନ୍ନ ବୁଲେଟିନ୍‌ରେ ଲେଖୁଥିଲା । ତା'ର ଆବୁରୁଜାବୁରୁ ଦାଢି , ଆଳିମାଳିଆ ପୋଷାକ , ସେଥିରେ କାନ୍ଧରେ ଫିତାଲଗା ବ୍ୟାଗ ।  ମୋର ମନେହୁଏ ସେ ବନ୍ଧୁଟି ପାର୍ଟିର ଗେରିଲା ବାହିନୀରେ କାନ୍ଧରେ ବନ୍ଧୁକ ଝୁଲାଇବା କଥା , ଭୁଲରେ ଚାବିନେଂଥା ପରି କାନ୍ଧରେ ଝୁଲେଇଥିଲା ତା' ପରିବାର ।

ଦିନେ ରାତି ସାଢେ ଦଶରେ ତା' କବାଟ ଠକ୍ ଠକ୍ କଲି । ଆମେ ତାକୁ କୋଡନମ୍ବରରେ ଜାଣୁ - କମ୍ରେଡ୍ ଇଂଜିନିୟର । ଲାଲ ସଲାମ । ସେ ଲାଲସଲାମ୍ ପକାଇଲା । ଚାରିଆଡକୁ ସତର୍କରେ ଚାହିଁ ଡାକିଲା - ଭିତରକୁ ଆସ ।

ଘର ଭିତରେ ତାକୁ କହିଲି - ଏଠି ମୋର ଦଶବାର ଦିନ ରହିବାର ବ୍ୟବସ୍ଥା କର । ବିଶ୍ୱାସୀ ଡାକ୍ତର ଠିକ୍ କର । ଏଠି ମୋ ଫାମେଲିପ୍ଲାନିଂ ଅପରେସନ୍ ହେବ । ଆମେ ଦୁଇଜଣ ଜାଣିଥିଲୁ , କୌଣସି ପ୍ରାଇଭେଟ୍ କ୍ଲିନିକ୍ କି ସର୍କାରୀ ହସପାତାଲ୍ ମୋ ଅପରେସନ୍ ପାଇଁ ନିରାପଦ ନୁହେଁ , ମୋ ପଛରେ ପୋଲିସ୍‌ର ଭୋକିଲା ନଜର ।

କମ୍ରେଡ୍ ଇଂଜିନିୟର ମୋର ଜଣେ ସମଝଦାର ବନ୍ଧୁ । ଗାଡିନଥିବା ଗ୍ୟାରେଜ ଘରଟେ ପରିତ୍ୟକ୍ତ ହୋଇପଡିଥିଲା । ସେ ଘର ସଫା କରି ମୋ ପାଇଁ ଫିତାଲଗା ଖଟ , ପିଇବା ପାଣି ସୁରେଇ , ଲୁଙ୍ଗି , ଗାମୁଛା , ବିଛଣା ଚଦର ଠିକ୍ କରିଦେଲା ।

ସେହି ଗ୍ୟାରେଜ ଘରେ ଯେତେ ରାତି କଟୁଥିଲା , ମୋର ଅପେକ୍ଷା ଥିଲା ଜଣକୁ ସାବେନି ମୁହିଁ , ଜୁଳୁଜୁଳିଆ ଆଳୁଅ ରଙ୍ଗ ପରି ଆଖିର ମାଲିକାଣୀକୁ ।  ଯାହାର ପ୍ରେମ ଗୋଟେ ଗ୍ୟାରେଜ୍ ଘରେ ଦଉଡିଆ ଖଟରେ ଅପେକ୍ଷା କରାଇଥିଲା , ତାକୁ ଚାହିଁରହିଥିଲି ।

ଦିନେ ଭୋର୍ ଭୋର୍ କମ୍ରେଡ ଇଂଜିନିୟର ତାକୁ ଆଣି ଗ୍ୟାରେଜ ଘରେ ମୋ ପାଖରେ ଛାଡ଼ି ଦେଇଗଲା । ସେ ଜଙ୍ଗଲରେ ଚାଲି , କେଉଁଠି ଗାଡ଼ି ମୋଟର ବଦଳାଇ ଆନ୍ଧ୍ରରୁ ଆସି ମୋ ପାଖରେ ପହଂଚି ଗଲା ।  ତାପରେ ରାତିରେ ମୋର ଅପରେସନ୍ ହେବା ଠିକ୍ ହେଲା ।

ଆମ ହାତରେ ଗୋଟିଏ ରାତି , ଦୁଇଦିନ । ଏହି ସମୟ ତକ ଆମର ବ୍ୟକ୍ତିଗତ

ପାଇବା ଓ ହରେଇବା କଥା । କେତେବେଳେ ମନ ଖୋଲା ହସିଥିବୁ , କେତେବେଳେ ଲୁହ ଝରାଇବୁ ।

ମୁଁ ଖାସୁ ହେଲେ ତାକୁ ପାଇବି , ମୋ ପୁରୁଷପଣିଆର ଏହି ବ୍ୟର୍ଥତାଟାକୁ ମୁଁ ହଜମ କରୁଥାଏ । ହେଲେ ଛୁଆଟିଏ ଜନ୍ମ ନକରିବାର ତା' ଭିତରେ ଢଳଢଳ ହେଉଥିବା ମା' ମନଟା ଯେପରି ଛଟପଟ ହେଉଥିଲା । ଛୋଟ ପିଲାପରି ତାକୁ କୋଳକୁ ଉଠାଇ ଆଣିଲି । ତା' ମଥା ସାଉଁଳି ତିଆରି କଲି ଆମ ଦୁଇଜଣଙ୍କ ପାଇଁ ସାନ୍ତ୍ୱନା - ପ୍ରଥମେ ପାର୍ଟି ପାଇଁ ଆମ ପ୍ରେମ । ବାହାଘର । ପାର୍ଟି ପାଇଁ ଆମର ଦୁଇଜଣଙ୍କ ସଂସାର ।

ପାର୍ଟି ଆମର ତାକତ୍ ,ଆମେ ବି ପାର୍ଟିର ତାକତ୍ । ଆମେ ଦୁହେଁ ଗୋଟେ ସଂକଳ୍ପରେ ରକ୍ତଝରା ପଥର ସାଥୀ । ଏହିସବୁ ଆମର ତ୍ୟାଗର କ୍ଷୟକ୍ଷତିରେ ପାର୍ଟି ହୁଏ ଦୃଢ଼ । ବିପ୍ଳବ ହୁଏ ସଫଳ । ସେ ବୁଝିଲା , ମୋ ହାତରେ ହାତଛନ୍ଦି ଦେଲା ।

ଅପରେସନ୍ ହେବାର ଦି' ଦିନ ପରେ ଆନାସ୍ଥାସିଆର ପ୍ରକୋପ ଦେହରୁ ଯେତେ କମୁଥାଏ , ଅପରେସନ୍ ଜାଗାରୁ ଦିକ୍ ଦିକ୍ ବିନ୍ଧା ଆରମ୍ଭ ହୋଇଥାଏ । ସେ ବାହାରିଲା - ଯିବା ଆଗରୁ ସେ ହସିଲା ଆଉ ଆଙ୍ଗୁଠିରେ ମାସ ହିସାବ କରି କହିଲା - ଆଉ ସାଢେ ତିନିମାସ ପରେ ଦେଖା । ଭଲରେ ଥାଅ କମ୍ରେଡ୍ ।

ଏହାପରେ ସେ ବଡ଼ର ପାରହୋଇ ଥିବ । ଜଙ୍ଗଲ ଜଙ୍ଗଲରେ ଅନ୍ଧାରରେ ପଶିବ । ୟୁନିଫର୍ମ ପିନ୍ଧି , କାନ୍ଧରେ ବନ୍ଧୁକ ଝୁଲେଇ ବାଘୁଣୀ ପରି ତା'ର ଆକ୍ସନ ଗ୍ରୁପରେ ସାମିଲ୍ ହୋଇଥିବ ।

ସେ ଗଲାପରେ , ତାକୁ ନେଇ ଆତ୍ମସନ୍ତୋଷ ଓ ଆଗାମୀ ସ୍ୱପ୍ନ ସବୁ ମୋତେ ଅନ୍ୟମନା କଲା । ସେତିକି ବେଳେ ଖବର ମିଳିଲା - ରାୟଗଡ଼ା ରେଳଷ୍ଟେସନ୍ ଛକ ପାଖରୁ ଦୁଇଜଣ ଆନ୍ଧ୍ରର ଗ୍ରେହାଉଣ୍ଡସ୍ ପୋଲିସ୍ , ସାଧା ପୋଷାକରେ ମୋଟର ସାଇକେଲରେ ଦାସୁକୁ ଉଠାଇ ନେଇଛନ୍ତି । ତା'ର ପତା ମିଳୁନି ।

ଦାସୁରାମ ଲାପତା - ବଜ୍ରପାତ ପରେ ଭୟାଳୁ ନୀରବତା ପରି ମୋ ଅବସ୍ଥା । ଶୋଇବା ବିଛଣାରେ ଭୟ ଓ ଆଶଙ୍କାରେ । ମୁଁ ଜାଣେ ଆମ ପାର୍ଟି ଲୋକଙ୍କୁ ଦମନ ନାଁରେ ଆନ୍ଧ୍ର ପୋଲିସ ଓଡ଼ିଶାରେ କିପରି ଦେଖାଏ ଦାଦାଗିରି । ସେମାନେ ଆନ୍ଧ୍ରରୁ ଆସି ରାୟଗଡ଼ାରୁ ଯଦି ଓଡ଼ିଶା ଲୋକକୁ ନେଇଗଲେ , ଓଡ଼ିଶା ପୋଲିସ ଏବେ କେଉଁଠି !

ଗ୍ରେହାଉଣ୍ଡସ୍‌ଙ୍କ ପ୍ରତିହିଂସା ମୁଁ ଜାଣେ - ହୁଏତ ସେମାନେ ଏନ୍‌କାଉଂଟର୍‌ରେ ଦାସୁକୁ ଖତମ୍ କରିଦେବେ , ବନ୍ଦ କରିଦେବେ ପାର୍ଟି ପାଇଁ ପାଟିକରି ଗୀତ ଗାଉଥିବା ସେ କୁଇ କବିର ପାଟି ।

ଅପରେସନ୍ ପରେ ବିଶ୍ରାମ , କମ୍ରେଡ୍ ଇଂଜିନିୟରଙ୍କ ଆତିଥ୍ୟ ଗୁଣୁପୁରରେ ପଲଟିକ୍ସ, ଏ ସବୁକୁ ପଛକରି ମୋତେ ଫେରିଯିବାକୁ ହେବ ରାୟଗଡ଼ା । ମୋର ସେହି ପ୍ରିୟ କୁଇ ସାଥୀଟିକୁ ଖୋଜି ବାହାର କରିବାକୁ ହେବ । ବଢ଼ି ଯାଇଥିବା ଦାଢ଼ି , ଆଉ ଅସୁନ୍ଦର ମଇଳା ପୋଷାକ ଗେଟଅପ୍‌ରେ ମୁଁ ଗ୍ୟାରେଜ୍ ଘର ଛାଡ଼ିଲି । ରାୟଗଡ଼ାରେ ମେସେଞ୍ଜର ନିକ୍‌ଲାସକୁ ଖୋଜିଲି । ନିକଲାସ୍ ମିଳିଲାନି । ଶୁଣିଲି ପାର୍ଟିର ଉପର ସ୍ତରରେ ଦାସୁରାମର ଅପହରଣ ମିଶନକୁ ନେଇ ଆଲୋଚନା , ଖୋଜାଲୋଡ଼ା , ବିଚାର ବିମର୍ଷ ଚାଲିଥିଲା ।

ଚାରିଦିନ ପରେ ସେ ମୋ ପାଇଁ ପାର୍ଟିର ଅଡ଼ର ଆଉ ଖରାପ ଖବର ନେଇ ଆସିଥିଲା - ଦାସୁ ଅପହରଣ ପରେ ସେଠି ଜାଗାକୁ ଜଗା ପୋଲିସ କ୍ୟାମ୍ପ୍ ବସାଇଛି । ପାର୍ଟି ସପୋର୍ଟର କଡ଼କଡ଼ମହା ଗାଁର ପ୍ରକାଶ ଓ ରବିକୁ ପୋଲିସ ମାଡ଼ ମାରି ଚାରିଦିନ ଥାନାରେ ଅଟକାଇ ଛାଡ଼ିଛି । ଦାସୁରାମ୍ ଗାଁରେ ଆରମ୍ଭ ହୋଇଯାଇଛି ପୋଲିସ୍ ଚଢ଼ାଉ ।

ମୁଁ ବ୍ୟସ୍ତ ହୋଇ ପଚାରିଲି - ତେବେ ଗୁଡୁରିପଙ୍କା ଗାଁରେ ଅବସ୍ଥା ଖରାପ ? - ଅବସ୍ଥା ବହୁତ ଖରାପ ଆଜ୍ଞା । ଦାସୁକୁ ପୋଲିସ ନେଇଯାଇଛି ଖବର ପରେ - ଦାସୁର ମଦ ବିରୋଧି ଆନ୍ଦୋଳନକୁ ଯେଉଁ ଶୁଣ୍ଡି , ମହାଜନମାନେ ବିରୋଧ କରୁଥିଲେ , ସେମାନେ ହରିଜନକୁ ହାତକରି ତା' ବିଲରୁ ପାଚିଲା ଧାନ କାଟିନେଇଛନ୍ତି । ପୋଲିସ ଗୁଡୁରିପଙ୍କାରେ ଲୁଟତରାଜ ଆରମ୍ଭ କରିଦେଇଛି । ପାଉଲ ମାଝିର ଖାଉଟି କାର୍ଡ଼ , ବାରଶହ ଟଙ୍କା ପୋଲିସ ଛଡ଼େଇ ନେଇଛି । ବାଡ଼ିସା ମାଝିର ମରିଚ , ବିରି , କାନ୍ଦୁଲ , କାସୁ ମଳିକର ଜହ୍ନା , ମାକରା ମାଝିର ରନ୍ଧା ଗୋରୁ ମାଂସ ; ସୁଲତାନ ଘରୁ କାନ୍ଦୁଲ , ଜହ୍ନା , ଶୁଖିଲା ଗୋରୁ ମାଂସ ପୋଲିସ ନେଇଗଲେ । ପ୍ରକାଶ ଘର ତାଲା ଭାଙ୍ଗି ପୋଲିସ କିଛି ପାଇଲା ନାହିଁ , ପନ୍ଦର ଟଙ୍କା ନେଇଗଲା । ଗୁଡୁରିପଙ୍କା ୱାର୍ଡମେମ୍ବର ଠାରୁ ବି ପୋଲିସ୍ ଛ' ଶହ ଟଙ୍କା ଛଡେଇ ନେଇଛି ।

ଦାସୁରାମ୍ ଗାଁରେ ପୋଲିସ୍ ଲୁଟ୍ ତାଲିକା ପାଖରୁ ତାକୁ ଅଟକାଇଲି । ନିକ୍‌ଲାସ୍ ଗଜପତି ଅଂଚଳରୁ ଆସିଥିଲା । ସେଠି ଯେଉଁ ଦମନର ଖବର ସେ ଆଣିଥିଲା , ସେଗୁଡ଼ା କହି ମଧ ଶାନ୍ତ ହୋଇ ପାରୁନଥିଲା । ମୁଁ ତା ଅସ୍ଥିର ମଥାରେ ହାତ ରଖିଲି । କହିଲି - ପାର୍ଟିରୁ ଗୋଟେ କଥା ଆମେ ଶିଖିଛେ - ଶତ୍ରୁମାନେ ସବୁବେଳେ ଦୁଇଧାରାର ଅସ୍ତ୍ର ଚଳାନ୍ତି । ତା'ର ଗୋଟେ ଧାରକୁ ଦେଖି ବିଚଳିତ ହେବାର କୌଣସି କାରଣ ନାହିଁ ।

ନିକ୍‌ଲାସ ପାର୍ଟିର ଅଡ଼ର ନେଇ ଆସିଥିଲା - ମୋତେ ରାୟଗଡ଼ା ଶୀଘ୍ର ଛାଡି ଦେବାର ଅଛି । ପହଁଚିବା ଅଛି ଗଜପତିର ମୋହନା ଏରିୟାରେ । ନିକ୍‌ଲାସ୍ ଠାରୁ ଅଲଗା ହୋଇ ମୁଁ ବାହାରି ପଡିଲି ।

ମାସ ମାସ ବିତିଯାଉଥାଏ । ଆମର ଇନ୍‌ଫର୍ମର , ମେସେଂଜର , ମିଲିସିଆ କାହାଠୁ ମିଳୁନଥାଏ ଦାସୁର ସଠିକ ଠିକଣା । ମୋ ଭିତରେ ପାପ ଛୁଉଁଥାଏ - ଏନକାଉଂଟରରେ ବୋଧେ ଶହୀଦ ହୋଇଯାଇଛି ଦାସୁ ।

ଦାସୁରାମ୍ ଉପରେ ଏହିପରି କଳ୍ପନାଜଳ୍ପନାରେ ମୁଁ ଯେତେବେଳେ ଥଳକୂଳ ପାଉନଥାଏ , ଖବର ମିଳିଲା - ବିଶାଖାପାଟଣା ଜେଲ୍‌ରେ ଅଛି ଦାସୁରାମ୍ । ମୋ ଭିତରେ ହୋସ୍ ପଶିଲା । ପୋଲିସ ଏନକାଉଂଟରରେ ମରିହଜି ଯାଇନିତ ଦାସୁରାମ୍ । ଦାସୁ ଏବେ ଲାପତା ନୁହେଁ । ବିଶାଖାପାଟଣା ଜେଲ୍‌ରେ ଅଛି । ଜେଲ୍‌ରେ କ'ଣ କରୁଥିବ ଦାସୁ ? ତା'ର ବିପ୍ଳବୀ ଗୀତସବୁକୁ କରୁଥିବ ଆହୁରି ତୀକ୍ଷଣ୍ । ପାର୍ଟିରେ ମୋର ବ୍ୟସ୍ତ କାର୍ଯ୍ୟକ୍ରମ ଭିତରେ , ଏହା ଭିତରେ ମୁଁ ବୁଲିଚାଲିଛି ରାୟଗଡାରୁ ଗଜପତି , ବ୍ରହ୍ମପୁରରୁ ଭୁବନେଶ୍ୱର । ହେଲେ ନିଜେ ଭୁଲିଯାଇଛି ନିଜ ବିବାହ ତାରିଖ ଗଣିବାର କଳା । ସେ ମୋତେ ମନେ ପକେଇ ଦେଇ ଗୋଟେ ଚିଠି ଲେଖିଛି । ସେ ଲେଖିବାର କୋଡ଼ିଏ ଦିନପରେ ଆନ୍ଧ୍ର ଆଡରୁ ଜଣେ ମେସେଂଜର ଆଣି ମୋତେ ଦେଲା ସେ ଚିଠି । ସେ ଲେଖିଥିଲା - 'କମ୍ରେଡ଼ । ପାର୍ଟି କଣ୍ଡିସନରେ ଆମର ମ୍ୟାରେଜ୍ ପାଇଁ ବର୍ଷେ ଶେଷ ହୋଇ , ଏହି ଭିତରେ ଦୁଇ ମାସ ଗଡିଗଲାଣି । ଏହାପରେ କେବେ କେଉଁଠି ଲେଖ । ଲାଲ୍ ସଲାମ୍ ।'

ପାର୍ଟିର ସ୍ୱୀକୃତି ପରେ ଆମର ବିବାହ ପାଇଁ ତା'ର ଅପେକ୍ଷା ଓ ବ୍ୟାକୁଳତାରେ ମୁଁ ତା'ର ଭଲପାଇବାକୁ ପୁଣି ନୂଆ କରି ଅନୁଭବ କଲି । ହେଲେ ଆମ ବିବାହ ପରି ସବୁଠୁ ସୁନ୍ଦର ଦିନରେ ଦାସୁର ଅନୁପସ୍ଥିତିକୁ ମୁଁ ଗ୍ରହଣ କରିବାକୁ ନାରାଜ ଥିଲି । ସେହି ମେସେଂଜର ହାତରେ ଲେଖିଲି - 'ଆମେ ବିବାହ କରିବା , ଆମ ପ୍ରିୟ କମ୍ରେଡ଼୍ କବି ଦାସୁରାମ୍ ସେଠି ଗୀତ ଗାଇବ ନାହିଁ - ଏ କିପରି ମ୍ୟାରେଜ ସେରିମନି ? ବିଶାଖାପାଟଣା ଜେଲରୁ ଆସି ଦାସୁ ଓଡ଼ିଶାର ଜି.ଉଦୟଗିରି ଜେଲ୍‌ରେ । ତା' ଖଲାସ ପରେ ମୋ ଚିଠି ପାଇବ । ଲାଲ୍ ସଲାମ୍ ।'

ଦାସୁ ପାଇଁ ନିଜ ବାହାଘରକୁ ଘୁଂଚେଇ ନିଜକୁ ମୁଁ ବୁଝାଇ ପାରୁନଥାଏ । କେବଳ ଦାସୁ ଉପରେ ଯେଉଁ ଖବର ମିଳୁଥିଲା , ଦାସୁକୁ ଆନ୍ଧ୍ର ପୋଲିସ୍ ପ୍ରବଳ ନିର୍ଯ୍ୟାତନା ଦେଇଛି , ନକ୍ସଲପନ୍ଥୀ ବୋଲି ମାନିଯିବାକୁ ବାଧ କରିଛି , ପୋଲିସ୍ ଥାର୍ଡ଼ ଡିଗ୍ରୀରେ ମଧ ସରେଣ୍ଡର୍ କରିନି ଦାସୁ । ହାଜତ୍ ହେଉ ବା କୋର୍ଟ - ଦମ୍ଭ ଭାବେ ଛିଡା ହୋଇଛି ଦାସୁ । ପାର୍ଟି ପାଇଁ ହଜମ୍ କରିଛି କଠିନରୁ କଠିନତମ ଦଣ୍ଡ ।

ପାର୍ଟିର ପ୍ରୋଗ୍ରାମ୍ ନେଇ ମୁଁ ଯେତେବେଳେ ସାପେଲ୍‌ଗୁଡା ଗାଁରେ ଥାଏ ,

ସେତେବେଳେ ସୌରାମାନଙ୍କ ପର୍ବ । ଖିଆପିଆ ନାଚଗୀତରେ ସାରାରାତି ସାପେଲଗୁଡା ମସ୍‌ଗୁଲ୍ । ତାପର ଦିନ ସମସ୍ତେ ଅନିଦ୍ରାରେ ଢୋଲ୍ ଢୋଲ୍ । ସେଦିନ ପାରଳାଖେମୁଣ୍ଡିରୁ ଫେରିଲା ମାଙ୍ଗେରା ।

ମାଙ୍ଗେରା ପାର୍ଟି ପାଇଁ କାମ କରୁଥିଲା । ତା ପଛରେ ଝୁଲୁଥିଲା ପୋଲିସର ମିଛ କେଶ୍ । ଦି' ଦି' ଥର ଥାନାରୁ ଖସି ମାସ ମାସ ଧରି ଜଙ୍ଗଲରେ ସେ ଲୁଚିବୁଲୁଛି , ମୋତେ ଦେଖି କହିଲା - ଅଜ୍ଞା ପାରଳାଖେମୁଣ୍ଡିରୁ ଖବର ମିଳିଛି ଆଉ ଦୁଇଦିନ ପରେ ଦାସୁରାମ୍ ଖଲାସ୍ ହେବ । ବେଲର୍ ଠିକ୍ ହୋଇଯାଇଛି ।

ଷୋହଳ ମାସ ଜେଲ୍ ଭିତରେ ରହି ପଦାକୁ ବାହାରୁଥିବା ସେ କୁଇ କବିଟିକୁ ଭେଟିବା ପାଇଁ ମୁଁ ସାପେଲଗୁଡା ଛାଡିଲି ।

ପାରଳାଖେମୁଣ୍ଡିରେ ଜଣେ ପାର୍ଟି ସପୋର୍ଟର ଘରେ ମୁଁ ଯେତେବେଳେ ଦାସୁରାମ୍ କୁ ଭେଟିଲି - ନିର୍ଯ୍ୟାତନା ଭିତରୁ ଉଠି ଆସିଥିବା ଦାସୁ ଦିଶୁଥିଲା ଦୋସରା । ତା'ଉପରେ ବିତିଯାଇଥିବା ଦମନର ଚିହ୍ନ ତା' ଦେହରୁ ଲିଭିନଥିଲା । ହେଲେ ତା' ଆଖିରୁ ଚକ୍ ଚକ୍ କରୁଥିଲା ମୁକ୍ତିର ଗୋଟେ ସରଳ ଖୁସି ।

ଦାସୁ ମୋତେ ଜଣାଇଲା ଲାଲ୍‌ସଲାମ୍ । ତା' ଅଖିରେ ଲୁହ ଟଳମଳ । ମୁଁ ତା' ହାଡୁଆ ପତଳା ହାତରେ ହାତମିଳାଇଲି । ତା' ପିଠିରେ ପୋଲିସର ଆଘାତ ଉପରେ ଛୁଇଁଲି ମୋ ସମବେଦନାର ସ୍ପର୍ଶ ।

ମୁଁ ତା'ଠୁ ଜାଣିବାକୁ ଚାହିଁଲି- 'ରାୟଗଡ଼ା ଷ୍ଟେସନ୍‌ରେ ଆନ୍ଧ୍ର ପୋଲିସ ଯେତେବେଳେ ତୁମକୁ ନେଲା , ସେମାନଙ୍କ ସହ କ'ଣ ଓଡ଼ିଶା ପୋଲିସ ଥିଲା ?

- 'ରାୟଗଡା ଷ୍ଟେସନ୍‌ରେ ଗୋଟେ ହୋଟେଲ କଡରେ ମୁଁ ପରିସ୍ରା କରୁଥାଏ । ସାଧା ପୋଷାକଧାରୀ ଆନ୍ଧ୍ରରୁ ଗ୍ରେହାଉଣ୍ଡସ୍ ଦି' ଜଣ ମୋତେ ଯେତେବେଳେ ମୋଟର ସାଇକେଲରେ ଉଠେଇ ନେଲେ , ସେଠି ରାୟଗଡ଼ା ପୋଲିସ ନଥାଏ । ମୁଁ ସେମାନଙ୍କ ମୋଟର ସାଇକେଲରୁ ଓହ୍ଲେଇ ପଡ଼ି କହିଲି - ମୁଁ ତୁମମାନଙ୍କ ସହ କାହିଁକି ଯିବି ? ମୋର କି ଦୋଷ ? ଓଡ଼ିଶା ପୋଲିସ ପାଖକୁ ନେଇ ମୋ ଦୋଷ ବିଚାର କର । ସେମାନେ ମୋ କଥା ଶୁଣିଲେନି । ମୋତେ ମାଡ଼ ମାରି ଗାଡ଼ିରେ ବସେଇ ନେଇଗଲେ । ଅଧାବାଟରେ ଆଉ ଜଣଙ୍କୁ ନେଇ ମୋତେ ଦେଖେଇଲେ । ସେ ହାତଠାରି ମୋତେ ଦେଖେଇଲେ । ସେ ହାତଠାରି ମୋତେ ନେଇ ଯିବାକୁ କହିଲା । ସେ ଆମ ଏଠିକା ଲୋକ । ଆନ୍ଧ୍ର ପୋଲିସର ଇନଫରମର୍ । ସେ ଗ୍ରେହାଉଣ୍ଡସ୍ ବାଲା ମୋତେ ଲେଟର ମାଗିଲା । ମୋ ପାଖରେ ଚିଠିପିଠି କିଛି ନଥାଏ । ମୁଁ ମନାକଲି । ସେମାନେ ମୋତେ ଆନ୍ଧ୍ରର କମରତା

ଥାନାକୁ ନେଇଗଲେ । ସେଠି ମୋ ହାତରେ ଗୋଟେ ବୋମା ଧରାଇଦେଲେ । କହିଲେ ଏଇଟା ତୁ ଧର । ତୁ ନକ୍ସଲପନ୍ଥୀ । ମୁଁ କହିଲି - ମୁଁ ନକ୍ସଲ ନୁହେଁ , ମୁଁ ବୋମା କାହିଁକି ଧରିବି ? ସେମାନେ ମୋତେ ନଙ୍ଗଳା କରିଦେଲେ । ହାଜତରେ ବନ୍ଦ କରିଦେଲେ ।"

ମୁଁ ବୁଝିପାରୁଥିଲି ଗୀତ ପାଇଁ କଏଦୀ ହୋଇ ଫେରିଥିବା ଦାସୁର ଜେଲ୍ ଅନୁଭୂତିର ଆବେଗ କେତେ ରୋକ୍‌ଠୋକ୍ । ମୁଁ ପଚାରିଲି - ଅଚ୍ଛା ! ଆମ ପାର୍ଟିର ବହୁତ ଲୋକ ଜେଲ୍ ଭିତରେ ପଶୁଥିବେ ,ବାହାରୁଥିବେ । ତୁମେ ତ ଖବର ପଠାଇପାରିଥାନ୍ତ । ଅନେକ ଦିନ ଧରି ଆମେ କେହି କିଛି ଜାଣିପାରିଲୁନି ତୁମେ କେଉଁଠି ? ତୁମେ ବଂଚିଛ ନା ଏନକାଉଁଟରରେ ............

....... 'ଖତମ' କଥାଟା ଇଙ୍ଗିତିରେ କହି ମୁଁ ହସିଲି । ପୋଲିସ କୋରଡାରୁ ବର୍ତ୍ତିଯାଇଥିବା ଦାସୁ ବି ହସିଦେଲା ।

- ମୋତେ ସେମାନେ କେଉଁ ଗୋଟିଏ ଜାଗାରେ ସ୍ଥିର କରି ରଖୁଥାନ୍ତି ଯେ ବାହାରକୁ ଖବର ପଠାଇବି ! ମୋତେ କମରଡ଼ା ଥାନାରୁ ପାର୍ବତୀପୁରମ୍ ଥାନା ନେଲେ । ସେଠିକା ଥାନା ବାବୁ ପି. ବିଜୟକୁମାର ମୋତେ ପ୍ରବଳ ମାଡ଼ ଦେଲା , ମୋ ତିନିଶହ ଟଙ୍କା , ଘଂଟା ଛଡେଇ ରଖିଲା । ସେଠୁ କମରଡ଼ା ଥାନା , ପାର୍ବତୀପୁର ଥାନାବାଲା ମିଶି ମୋତେ ବିଜୟନଗର ନେଲେ । ଗୋଟେ ଗୁପ୍ତ ଆଡ୍ଡାରେ ମୋତେ ରଖି ମୋ ପାଟିରେ ବନ୍ଧୁକ ନଳି ପୁରେଇ କହିଲେ - ନକ୍ସଲଙ୍କ ବିଷୟରେ କ'ଣ ଜାଣିଛୁ କହ ? ନହେଲେ ତୁ ନକ୍ସଲ ଡ୍ରେସ ପିନ୍ଧି ଆମ ସହିତ ଗୁଡାରୀ ଚାଲ । ସେମାନଙ୍କ ସହିତ ସେଠି ଆସି ମିଶିଲେ ଆମ ଗୁଣୁପୁର , ପଦ୍ମପୁରର ପୋଲିସ । ଆନ୍ଧ୍ର ପୋଲିସଙ୍କ ଆଡ୍ଡାରେ ଓଡ଼ିଶା ପୋଲିସ୍ ମୋତେ ବେଶି ମାଡଦେଲା । ମୋତେ ମାରି ମାରି ଠେଙ୍ଗା ଭାଙ୍ଗିଲା , ରବର ପାଇପ୍ ଖଣ୍ଡ ଖଣ୍ଡ କଲେ । ସେଠି ଜଣେ ବୁଢ଼ା ଓଡ଼ିଆ ପୋଲିସ କହିଲା - 'ଏଇଟାକୁ ରେଳଗାଡି ତଳେ ଶୁଆଇ ଦେଲେ ଚଳିବ' । ସେଠି ମତେ ଗୋଟେ ପଟା ଧରାଇଦେଲେ , ସେ ପଟାରେ 'ଜୟରାମ ମାଝି' ନକ୍ସଲପନ୍ଥୀ ବୋଲି ଲେଖାଥିଲା । ମୋତେ ସେ ପଟା ଧରାଇ ଆନ୍ଧ୍ର ପୋଲିସ୍ , ଓଡ଼ିଶା ପୋଲିସ ମୋ ଫଟୋ ନେଲେ । ମୋତେ ସେଠୁ ବୋବୁଲି କୋର୍ଟକୁ ନେଲେ । ସେଠୁ ଥାନା । ଥାନାରୁ ବିଶାଖାପାଟଣା ଜେଲ । ତା'ପରେ ମିଛ କେଶ୍ ଦେଖାଇ ଓଡ଼ିଶା ପୋଲିସ୍ ମୋତେ ଓଡ଼ିଶା ଆଣିଲା । ପ୍ରଥମେ ଜି.ଉଦୟଗିରି ଜେଲ୍ , ତା'ପରେ ପାରଳାଖେମୁଣ୍ଡି । ଏମିତି ମୋତେ ବଲ୍ ପରି ଗୋଇଠା ମାରି ପୋଲିସ ଆନ୍ଧ୍ରରୁ ଓଡ଼ିଶା ଗଡେଇଛି ଷୋହଳମାସ ।

ଦାସୁ ଆଖିରେ ଲୁହ ବଦଳରେ ନିଆଁ ଝରୁଥିଲା । ସେ ଯେପରି ହାଡର ସ୍ୱରରେ

କଥା କହୁଥିଲା । ପରିବେଶ ଗମ୍ଭୀର ଥିଲା । ଆବହାଓ୍ୱାକୁ ହାଲ୍‌କାଫୁଲ୍‌କା କରିଦେବାକୁ ପଚାରିଲି - ଜେଲ୍ ଭିତରେ ତ ତୁମେ ବେଶ୍ ଗୁଡାଏ ଗୀତ ଲେଖିଥିବ ଦାସୁ ?

ଗୀତ ଲେଖାକଥା ପଡିଲାପରେ ଯାଇଁ ଦାସୁ ହସହସ ଦିଶିଲା ।

- ଗୀତ ଲେଖୁଛି ବୋଲି ତ ସେମାନେ ମୋତେ ଧରିନେଲେ । ସେଠି ମୋତେ ଗୀତ ଲେଖିବାକୁ ସୁଯୋଗ ଦେବେ ? ସେଠି କଲମ କାହିଁ , କାଗଜ କାହିଁ ? କିଛି ଲେଖିବା ପାଇଁ ଜେଲର ଚୁଲୀ ଅଙ୍ଗାର ଯା' ଭରସା । ଗୀତ ତ ଲେଖିପାରିଲିନି , ଆମ କୁଇ ଭାଷା ପାଇଁ ଅକ୍ଷର ସବୁ ତଆରି କରି ଅଙ୍ଗାରରେ ଗାରେଇଛି ।

ଦାସୁ ତା ବେନିୟନର ଛାତି ପକେଟରୁ ଚାରି ଭାଙ୍ଗର କାଗଜଟିଏ ବାହାର କଲା , ମୋ ଆଖି ସାମ୍ନାରେ ଖୋଲି ଧରିଲା ସେ କାଗଜ -

ମୁଁ ଦାସୁର ସେ ହାତଲେଖା କାଗଜ , ଆଉ ଦାସୁକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଥାଏ । ମୋ ସ୍ୱରରେ ଅବିଶ୍ୱାସନୀୟ କଂପନ - ଏଗୁଡ଼ିକ କ'ଣ କୁଇ ଅକ୍ଷର ? ଏହା କ'ଣ ପୂର୍ବରୁ ତୁମମାନଙ୍କର ଥିଲା ?

ଦାସୁ ହସିଲା - ଆଗରୁ ଆମ କୁଇରେ କୌଣସି ଅକ୍ଷର ନଥିଲା । ଆପଣ ତ ଦେଖିଛନ୍ତି - ଆମେ ଓଡ଼ିଆ ଅକ୍ଷରରେ କୁଇ ଭାଷାରେ ଲେଖୁ । ଜି.ଉଦୟଗିରୀ ଜେଲରେ ମୋତେ ଥରେ ଗୋଟେ ପୋଲିସ ପଚାରିଲା - ଆବେ । ତୁ କି କବି ହୋଇଛୁ । ଭୁବନେଶ୍ୱରରୁ ତଥ୍ୟ ଅନୁସନ୍ଧାନକାରୀ ଦଳ ଆସି ତୋତେ ଭେଟୁଛନ୍ତି । କାଗଜରେ ତୋ ନାଁରେ ଖବର ବାହାରୁଛି । ତୁ କେଉଁ ଲିପିରେ କବିତା ଲେଖୁ ? କୁଇରେ ନା ତେଲଗୁରେ ନା ଓଡ଼ିଆରେ ? ମୁଁ କହିଲି - 'ମୁଁ ଓଡ଼ିଆରେ ଲେଖେ ।' - 'କାହିଁକି ତୁମ କୁଇ ଭାଷାରେ କ'ଣ ଅକ୍ଷର ନାହିଁ ?' ସେ ପୋଲିସବାଲା ମୋତେ ପଚାରିଲା । ମୁଁ ମନାକଲି । ସେ ପୋଲିସବାଲା ସେଇଠି ମୋତେ ପରାମର୍ଶ ଦେଲା - 'ତୁମର ଯଦି ଅକ୍ଷର ନାହିଁ , ଯାହା ତୁ ପ୍ରଥମେ ପ୍ରଥମେ ଗାରେଇ ତୁମ ଲୋକଙ୍କୁ ଦେଖେଇବୁ , ସେମାନଙ୍କୁ ଶିଖେଇବୁ , ସେମାନେ ସେ ଅକ୍ଷରକୁ କୁଇ ଅକ୍ଷର ବୋଲି ମାନିଯିବେ । ସେହି ଦିନରୁ ଜେଲ୍ ଚଟାଣରେ ଅଙ୍ଗାରରେ ଗାରେଇ ଗାରେଇ ଅଭ୍ୟାସ କରି ଛ' ମାସରେ ଏ ଅକ୍ଷରସବୁ ତିଆରି କଲି ।

ଦାସୁ ମୋତେ ତା' ବର୍ଣ୍ଣ ପରିଚୟ କରାଉଥିଲା । ମୁଁ ଭାବୁଥିଲି - ଏ ଦାସୁ କ'ଣ ଜାଣେ ଏହା ଭିତରେ ତା' କୁଇ ଲୋକଙ୍କ ପାଇଁ ତିଆରି କରିପାରିଛି ପ୍ରଥମ ଲିପି । ଯେଉଁ ଜାତିର ଭାଷା ଅଛି , ଲିପି ନାହିଁ , ସେ ଜାତି ଧୀରେ ଧୀରେ ହରେଇ ବସେ ସ୍ଥିତି । ଦାସୁ ତିଆରି କରିଦେଇଛି ତା ଜାତିର ପ୍ରଥମ ଲିପି । ସେହି କୁଇଲିପିର ପ୍ରଥମ ଲେଖାଳିଟିକୁ

ସାଲ୍ୟୁଟ୍ ମାରିବାକୁ ମୋର ଇଚ୍ଛାହେଲା । ସେ ଯେପରି ସାଲ୍ୟୁଟ୍‌ର ଯୋଗ୍ୟ । ମୁଁ ତା ସାମ୍ନାରେ ପୋଜିସନ୍ ନେଇଗଲି । ମାରିଲି ସାଲ୍ୟୁଟ୍ । କହିଲି - ଲାଲ୍‌ସଲାମ୍ ।

ଦାସୁ ମୋତେ ଖୁସିରେ ଚାହିଁଥାଏ । ମୁଁ ମୋ ଖୁସିକୁ ତା'ଉପରେ ଫୁଲପରି ଓଜାଡ଼ି ଦେଲି - ତୁମେ ଜାଣିଚ କି ଦାସୁ , ଆଦିବାସୀ ଭାଷରେ ବହୁତ କମ୍ ଲିପି । ଯେମିତି ରଘୁନାଥ ମୁର୍ମୁ ସାନ୍ତାଳି ଭାଷାକୁ ଉଦ୍‌ଭାବନ କଲେ. ତୁମେ ସେମିତି କୁଇ ଅକ୍ଷରର ଉଦ୍‌ଭାବକ ।

-କେଜାଣି ଆଜ୍ଞା , ଉଦ୍‌ଭାବକ ଫୁଦ୍‌ଭାବକ କ'ଣ ମୁଁ ବୁଝେନା । ଆମର ଅକ୍ଷର ନଥିଲା , ଅଙ୍ଗାରରେ ଗାରେଇ ଏ ଅକ୍ଷର ସବୁ ଶିଖିଲି , ଇଂରାଜୀ ଓଡ଼ିଆ ଛବିବହି ଭଳି ଏ ଅକ୍ଷରକୁ ନେଇ ଛବି ବହିଟିଏ ଛାପିବି । ଆମ ପିଲା କୁଇ ଅକ୍ଷର ଶିଖିବେ । ଆମ ଅକ୍ଷରରେ ଲେଖିବେ ।

ନିଜର ସ୍ୱପ୍ନକୁ ନେଇ ପରିତୃପ୍ତ ଦିଶୁଥିଲା ଦାସୁ । ମୁଁ କିନ୍ତୁ ତା ଅକ୍ଷରକୁ ନେଇ ଅନ୍ୟକଥା ଭାବୁଥିଲି , ଆଉ ହସୁଥିଲି - ଦାସୁ ତିଆରି କରିଥିବା ଏ କୁଇ ଲିପିଟା ପାର୍ଟି ପାଇଁ ବେଶ୍ କିଛିଦିନ କୋଡ୍‌ରେ ବ୍ୟବହାର କରାଯାଇପାରେ । ଚିଠି ଧରାପଡିଲେ ପୋଲିସ ବୁଝିପାରିବନି - ଏ ଅକ୍ଷର ନା ଚିତ୍ରାଙ୍କନ ! ନିଜ ଗାଁ ଗୁଡ୍ଡୁରିପଙ୍ଗା ଯିବାକୁ ଦାସୁ ଉଚ୍ଛନ୍ନ ଥିଲା । ଜେଲ୍‌ରେ ଥିଲାବେଳେ ତା ବୁଢୀ ମା ଓ ତା ସ୍ତ୍ରୀ କୁ ତା' ସହିତ ଦେଖା କରିବାକୁ ସୁଯୋଗ ଦେଇନାହିଁ ଜେଲର୍ । ନିଜ ପରିବାରକୁ ଭେଟିବାକୁ ସେ ଛୁକ୍ ଛୁକ୍ ହେଉଥିଲା ।

ଜେଲ୍ ଫେରନ୍ତା ଲୋକକୁ ତା' ଘରଫେରନ୍ତା ରାସ୍ତାରେ କେତେ ସମୟ ମୁଁ ଅଟକାଇ ରଖିବି ? ଦାସୁ ଗଲା ।

ତା'ପରେ ପାର୍ଟି ପ୍ରୋଗ୍ରାମ୍ ନେଇ ମୋ ବ୍ୟସ୍ତତା ବଢିଗଲା । ହାଇଲେବୁଲ୍ ରେ ସ୍ଥିର ହେଲା - ଭୁବନେଶ୍ୱରରେ ଜନଗର୍ଜନ ସମାବେଶ ହେବ । ତା' ଆଗରୁ ଭୁବନେଶ୍ୱରରେ ପାର୍ଟି ସପୋଟରଙ୍କ ସହ ଯୋଗାଯୋଗ । ସେଠିକା ପଲଟିକାଲ ସିଚ୍ୟୁଏସନ୍ ଉପରେ ନଜର ରଖିବାକୁ ହେବ । ମୋ କମାଣ୍ଡରଠୁ ମୋତେ ଯେଉଁ ଯେଉଁ ଲୋକଙ୍କୁ କଂଟାକ୍ଟ କରିବାକୁ ଅର୍ଡର ମିଳୁଥିଲା , ମୁଁ ସେହି ଜାଗା , ସେହି କାମ କରି ଚାଲିଥିଲି ।

ପାର୍ଟିର ଏ ଦାୟିତ୍ୱ ଭିତରେ ମୋତେ ପାଲ୍‌ଟୁ ମିଳିଗଲା । ପାଲ୍‌ଟୁ କୁ ଦେଖିବା ପରେ ମୋ ଭିତରେ ଚେଇଁ ଉଠିଲା ମୋର ବ୍ୟକ୍ତିଗତ ଲୋଭ । ଅଟକିଯାଇଥିବା ବିବାହ କାମଟି ଶେଷ କରିଦେବାର ଅଛି । ସେ ପାଇଁ ପାର୍ଟିର ଜୋନାଲ୍ କମିଟିରୁ ପରମିଶନ୍

ଆଣିବାର ଅଛି । କେଉଁ ଗାଁରେ କେଉଁ ଦିନ ବାହାଘର ଠିକ୍ ହେବ ପାର୍ଟି ଠିକ୍ କରିବ । ମୁଁ ଜାଣେ , ପାର୍ଟିର ଜୋନାଲ୍ କୋଡିନେଟରଠୁ ପାଲ୍ଟୁ ଏହି ପରମିଶନ୍ କାମଟି ନେଇ ଆଣି ଥୋଇପାରିବ ।

ମୁଁ ବୁଝାଇ ଦେଲି - ଦେଖ ପାଲ୍ଟୁ । ଏହି ଗଜପତି ଏରିୟାରେ ଆସନ୍ତା ପନ୍ଦର ଦିନ ଭିତରେ ମ୍ୟାରେଜ୍ ପାଇଁ ପାର୍ଟିଠୁ ମୋର ପରମିଶନ୍ ଦର୍କାର ।

- ହୋଇଯିବ , କହି ପାଲ୍ଟୁ ଗଲା ।

ପାର୍ଟିର ପରମିଶନ୍ ମିଳିବା ପର୍ଯ୍ୟନ୍ତ ମୋ ସ୍ୱପ୍ନକୁ ନେଇ ବାଟ ଚାଲିଲି । ଏହାପରେ ଆମର ଜଙ୍ଗଲରେ ଜଙ୍ଗଲରେ ଭ୍ରମ୍ୟମାଣ ସଂସାରିକ ଜୀବନ ଆରମ୍ଭ ହେବ । ଏତେଦିନ ଧରି ତା'କୁ ସାଲଓ୍ୱାର କାମିଜ୍ , ପାର୍ଟି ୟୁନିଫର୍ମରେ ଦେଖିଆସୁଥିଲି । ମ୍ୟାରେଜ୍ ଦିନ ତାକୁ ଶାଢିପିନ୍ଧା ଧାଂଡି ବେଶରେ ଦେଖିବି । ବିବାହ ବେଳେ ତା'ର ଲାଜୁକ୍ ଛୁଆଁ ଆଉ କଂପନକୁ ପ୍ରଥମ ଥର ନିର୍ଭୟରେ ମୋ ଛାତି ଭିତରକୁ ଶୋଷିନେବି ।

ମୋ ମେରେଜ୍ ସେରିମନି ହେଉଥିବା ସେ ଆଦିବାସୀ ଗାଁରେ , ପାର୍ଟିର ବିଭିନ୍ନ ଜୋନ୍‌ରୁ ମୋ କମ୍ରେଡ୍ ବନ୍ଧୁମାନେ ଆସି ପହଂଚିବେ । ଗାଁ ଲୋକମାନେ କମ୍ରେଡ୍ ବାହାଘର ଆୟୋଜନରେ ଉତ୍ସାହିତ ଥିବେ । ଗୋରୁ ମରା ହେବ । ଦାସୁରାମ୍ ସେଠି ଥିବ । ସେ ଗାଇବ ତା' ନୂଆ ଲେଖିଥିବା ଗୀତ । ରାତିସାରା ଚାଲିବ ଧାଂଡା ଧାଂଡିଙ୍କ ନାଚଗୀତ । ତା'ଭିତରେ ମୁଁ ତା' ହାତ ଧରିବି । ଛାପ୍‌ଛାପ୍‌କିଆ ଜହ୍ନରାତିରେ ମହୁଲ ଜଙ୍ଗଲ ଆଡେ ଓଟାରିନେବି । ସେ ମୋ ଉପରେ ଓଜାଡି ହୋଇପଡିବ । ତା' ବେଣୀରେ କୁରେଇ ଫୁଲ । ସାରା ଜଙ୍ଗଲରେ ତା'ର ମହକ ।

ମୋର ଏ ସ୍ୱପ୍ନକୁ ନେଇ ଖୁସିର ଖବର ଜଣାଇବାକୁ ଆନ୍ଧ୍ରା ଆଡର ମେସେଂଜର ଜଣେ ମୋର ଦରକାର ଥିଲା । ସେତିକି ବେଳେ ପହଂଚିଲା ପାଲ୍ଟୁ । ମୋ ହାତରେ ଧରାଇ ଦେଲା ପାର୍ଟିର ବାଂଶଧରା ଜୋନାଲ୍ ଚିଫ୍‌ଙ୍କ ଅର୍ଡର - ଭୁବନେଶ୍ୱରରେ ଜନଗର୍ଜନ ସମାବେଶ ପୂର୍ବରୁ ସେଠାରେ ଦାସୁରାମ ମାଲେକାକୁ ପ୍ରେସ୍ କନଫରେନସ୍ ରେ ଛିଡା କରାଇବା ଜରୁରୀ ।

ଜନଗର୍ଜନ ସମାବେଶ ପରେ ଅବଶ୍ୟ ପାର୍ଟି ମୋ ବାହାଘର ପାଇଁ ସ୍ଥାନ ଓ ତାରିଖ ସ୍ଥିର କରିବ ବୋଲି ପ୍ରତିଶୃତି ଦେଇଥିଲା ।

ସାକାର ହେବାକୁ ଥିବା ମୋ ସ୍ୱପ୍ନ ପୁଣି ଘୁଂଚିଗଲା ଦୂରକୁ କିଛି ଦିନ । ପାର୍ଟିର ପ୍ରୋଗ୍ରାମ୍ ପାଖରେ ମୋର ବ୍ୟକ୍ତିଗତ ପ୍ରୋଗ୍ରାମର ମୂଲ୍ୟ କ'ଣ ? ମୁଁ ପୁଣି ପାର୍ଟି ପାଇଁ ସଜାଗ ହୋଇଉଠିଲି । ଦାସୁରାମର ଗାଁ ଗୁଡରିପଙ୍କା ଚାଲିଲି । ଗୁଡରିପଙ୍କା ଯିବା ରାସ୍ତାରେ

ଭାବୁଥିଲି - ପାର୍ଟି ପାଇଁ ଦାସୁ ବର୍ତମାନ କେତେ ଜରୁରୀ । ଭୁବନେଶ୍ୱର ପ୍ରେସ୍-ମିଟ୍‌ରେ ଟିଭି କ୍ୟାମେରା , ଟେପରେକର୍ଡର , ନୋଟବୁକ୍ , ସାମ୍ନାରେ ଛିଡାହେବ ଦାସୁ । ଗାଇବ ତା ଲେଖିଥିବା ଗୀତ । ଦେଖାଇବ ସେ ପ୍ରଥମ କରି ତିଆରି କରିଥିବା କୁଇ ଅକ୍ଷର । ତା'ପରେ ଜଣେ କୁଇ କବିର ଷୋହଳ ମାସ ବନ୍ଦୀ ଜୀବନର କାହାଣୀ କହିବ । ନକ୍ସଲ ନାଁରେ ନିରୀହ ଆଦିବାସୀ ଉପରେ ଆନ୍ଧ୍ର-ଓଡ଼ିଶା ପୋଲିସ କିପରି କରୁଛି ଦମନ , ମିଡିଆ ଆଗରେ ତୋଳି ଧରିବ ଦାସୁରାମ୍ । ପାର୍ଟିର ମିଡିଆ ମୋଟିଭେଟେଡ୍ ପ୍ରୋଗ୍ରାମରେ ଦାସୁ ହେବ ପାର୍ଟିର ପାର୍ଟି ।

ସେଦିନର ବାହାଘର ଝିଅବିଦା ଗୀତ ଲେଖି ଗାଉଥିବା ସେ ନିରୀହ କୁଇ କବିଟିକୁ ପାର୍ଟି ପାଇଁ ପ୍ରସ୍ତୁତ କରିବାର ମିଶନ୍ ଆଜି ସଫଳ । ମୁଁ ଗୁଡରିପଙ୍କାରେ ପହଂଚି ଖୋଜିଲି - ଦାସୁ କାହିଁ ? ଦାସୁ ?

ତା ଗାଁରେ ଦାସୁ ମୋତେ ଦେଖି ଯେତିକି ଖୁସି ହେଲା , ସେତିକି ଆଶ୍ଚର୍ଯ୍ୟ ।

- ତୁମକୁ ଭୁବନେଶ୍ୱର ଯିବାକୁ ହେବ ।

ଜେଲରୁ ଫେରି ଭଲଭାବରେ ନିଜ ପରିବାର , ସାହି ପଡ଼ିଶା , ବନ୍ଧୁବାନ୍ଧବଙ୍କ ସହ ଦିନ କଟାଇ ପାରିନଥିଲା ଦାସୁ । ପୋଲିସ ମାଡ଼ରେ ଅକ୍ତାମାକ୍ତା ହୋଇ ଅନେକ ଦିନରୁ ଲେଖି ପାରିନଥିଲା ଗୀତ । ତା' ଜମି ଉପରେ ମଡେଇ ପାରିନଥିଲା ଫସଲ । ପୁଅ ବାହାରକୁ ଗଲେ ପୁଣି କେଉଁ ଜେଲରେ ପଶିବ - ଭୟରେ ମନାକଲା ତା' ମା । ସେ କୁଆଡେ ଯାଇପାରିବେନି - ଘର ଭିତରୁ ଦାସୁର ସ୍ତ୍ରୀ ଶୁଣାଇଲା ତା'ନିଷ୍ପତି ।

ଦେଖିଲି , ପରିବାରର ଆକଟ ଭିତରେ ଚୁପ୍ ବସିଛି ଦାସୁ । ଲଢେଇର କେବେ ବିରାମ ନଥାଏ । ଲଢୁଆ କେବେ ଘର କୋଣରେ ନେଇପାରେ ନାହିଁ ବିଶ୍ରାମ । ମୁଁ ନିଜକୁ ଆହୁରି କଠିନ କରିଦେଲି । ମୋ ସ୍ୱରରେ ଭରିଲି ନିର୍ଦ୍ଦେଶ - ପାର୍ଟିର ଅର୍ଡର , ତୁମକୁ ଯିବାକୁ ହେବ ।

ଚାଙ୍ଗୁ , ଗୀତଖାତା , ଶାଳପତ୍ରର ପିକାଟେ ଧରି ଗୁଡୁରିପଙ୍କାରୁ ଭୁବନେଶ୍ୱର ବାହାରିପଡିଲା ଦାସୁରାମ୍ ।

*ସୌଜନ୍ୟ - ଗପର ହାତଗୋଡ଼*

# କୁଇ ଗୀତ

- ରାଜୁ

ଦାଦା ଦାସୁରାମ ଦାଦା ଦାସୁରାମ ନିନ୍ଧା ଜେଡ଼ା ଜହାରୀ
ଦାଦା ଦାସୁରାମ ଦାଦା ଦାସୁରାମ ନିନ୍ଧା ପାଟୁ ଜୁହାରୀ
ଗଜପତି ଜିଲ୍ଲା ଗୁଡ଼ିପାଙ୍ଗା ନାଜୁ
କୁଇ ହାକି ଇଜ ନିନୁ ଜନ୍ମ ଆତି
କୁଇ କାତା ନିପନ୍ ଏଲୁ କିତି
ଇଡୁ ତୁହାନା ନିନୁହତି (ଦାଦା)
ନାଜୁ ନାଜୁ ତ୍ରେତି ନିନୁ ସଂଘକିତି
ହାକି ଲୋକୁ ନିଆ ନିପନ୍ ଏଲୁକିତି
ଏବେଏ ଗାଡ଼ିଙ୍ଗା ନିନୁ ବ୍ରିଗିତି
ଗାଡ଼ିଙ୍ଗା ଏସାନଇ ବୁଦି ଗ୍ରାପ୍‌ତି (ଦାଦା)
ରାୟଗାଡ଼ା ରାଲି ବାଗା ୱେନ୍‌ମ୍ନନ୍ ନିନୁହାତି
ପୋଲିସ୍ କାଜୁ ତାୱା ନିନୁ ଏମ୍ବାଦି
ଆନ୍ଧ୍ରା ପୋଲିସ୍ ଅଦା ତେରି
ଅଡ଼ି ଦିନା ମାଡ଼ା ୱେତା ତେରି (ଦାଦା)
ଦେଶା ବାଗା ଦାଦା ନିନୁ କଷ୍ଟ ପାତି
ଏବେ କଷ୍ଟ ଆତେ ହାବେ ସହି ଆତି
ବାଡ଼ା ମାଣ୍ଡାନା ଆସ୍ଵିକିତେ ୱେସେ
ପାର୍ଟିତି କାତା ଇନା ୱେସାତି (ଦାଦା)
ବନ୍ଦିଡ଼ାହି ୱାତି ଲକୁ ରଣ୍ଡା କିତି
ବ୍ହେନ୍ଦା ସର୍କାରୀ ଡ଼ାହି ଅଟେ ଜୁଜି ଆତି
ତଡ୍ଲା ସିପେଙ୍ଗା ନିଙ୍ଗେ ଦାହାତା ତେରୀ
ଏମ୍ବାଡ଼ାହି ପାଣ୍ଡା ଡ଼ାଆ ତେରୀ (ଦାଦା)
ବନ୍ଦି ଗରିତା ମାଂଜାନ୍ କୁଇ ଅରା ୱିଗିତି
ନାଜୁ ନାଜୁ ତ୍ରେଜାନ୍ କୁଇ ପାଠ ଗ୍ରାପ୍‌ତି

ଏରେକି ବୁଡ଼୍ଜାମୁ ଏରେକି ବୁଡ଼୍ଜାମୁ
ନିନୁ ମା କୁଇ କବିତି (ଦାଦା)
ରାକା ପ୍ରାଙ୍ଗା ଡିଂଜାନ୍ ସ୍ରାଦା ଓ୍ୱାତା କିଆନ୍
ନି କ୍ଟିଂଜା ତିଦି ମାମୁ ନକେସି ଅନାମ୍
ଜୁଜି ଆନାମୁ ଜୁଜି ଆନାମୁ
ନି ପାହେରୀ ତାକି ନାମୁ (ଦାଦା)

## ସଲାମ୍ , ଦାସୁରାମ

- ବିନୋଦ
ସହ ସଂପାଦକ , ପ୍ରଗତିବାଦୀ

ମୁକ୍ତି ସାରଥୀ ଘେନ ପ୍ରଣିପାତ
ଏ ଲାଲ ପତାକା କଲା ମଥାନତ
ମହାସଂଗ୍ରାମେ ଉତ୍ଥିତ ତୁମ ବାହା ,
କ୍ରାନ୍ତିକାମୀ ହେ ଲୋହିତ ତାରକା
ମୁକ୍ତ ବିଜୟୀ ଶୁଭ୍ର ସଳିତା
ଜାଳି ଦେଇଗଲ ଏ ଦେଶ ମାଟିରେ
ନୂଆ ଜୀବନର ରାହା ।

ତରୁତମାଳର ଶସ୍ୟ କେଦାର
ଆଜି ଛୁଟି ଆସେ କବୁ ତୁମର
ସାମ୍ୟ ଚେତନାବାଣୀ ,
ମହାଜନତାର ହେ କବି ମହାନ
ନିଜରୁଲ ତୁମେ କବି ଦାସୁରାମ
ପ୍ରଣାମ ଶାନ୍ତିକାମୀ !

ପୋଲିସ କହିଲା ବିଦ୍ରୋହୀ କବି
ବାରୁଦେ ଯାହାର ଅଙ୍କିତ ଛବି
ଲାଲ ଆକାଶର ତାରା

ଶୋଷଣ ବିହୀନ ଧରଣୀ ଗୋଟିଏ
ଶୃଙ୍ଖଳ ହୀନ ମଣିଷ କୋଟିଏ
ଯା'ଚାହେଁ ସର୍ବହରା ।

ଭୋକରେ ଆସଇ ମୃତ୍ୟୁ ଯେଉଁଠି
କଳା କାହାଣୀର ଶବ୍ଦ ଏଇଠି
ଅସମାନ ଅଭିଧାନ ,
ବିଦେଶୀ ପୁଁଜି କରାଳ କବରେ
ପ୍ରତି ଭାରତୀୟ ମରେ ଯେଉଁଠାରେ
ଚାହେଁ ରକତର ସ୍ନାନ !

ଝଡରେ ଲିଖିତ କବିର କାହାଣୀ
ତୁମେ ଦାସୁରାମ ଲୋହିତ ଲେଖନୀ
ସବୁଜେ ମୁକ୍ତି ଯୁଦ୍ଧ ,
ନଥିଲା ବାଲାଙ୍କ ଲଢେଇ ଭିତରେ
ତୁମେ ଆସିଥିଲ ଅଙ୍କ-ସକାଳେ
ଥିଲା ଯେ ବକ୍ଷବିଦ୍ଧ !

ଭୋକର ଯୁଦ୍ଧ ହୁଏ ଉପଗତ
ଦାସୁରାମ ସାଥୀ କାରାକବି ପଥ
ତୁମର ମରଣ ନାହିଁ ,
ନୂଆ ସଂଗ୍ରାମ ଗଢିବାକୁ ଆଜି
ନିଶୀ ସକାଳରେ ଯାଇଥିଲ ହଜି
ନୂଆଁ ପଥ ଏକ ପାଇଁ !

ଭୋକୀ ମଣିଷର ଶୃଙ୍ଖଳ ଇତିହାସ
ଧରିଲ କଲମ କରିବାକୁ ନାଶ
ଅଯୁତ ବିଜୟୀ ବୀର ,

ତୁମେ ତ ମରିବ ମଶାଣୀର କୋଳେ
କୋଟି ଫୁଲ ଫୁଟେ ତୁମ କଲମରେ
ମୁକତି ହତିଆର !

*ସୌଜନ୍ୟ - ନିଶାନ୍*

# ଦାସୁରାମ

**- କେଦାର ମିଶ୍ର**

ଗୋଡ ଭାଙ୍ଗି
କାକୁସ୍ଥ , କାନ୍ଧ କାନ୍ଧ ହୋଇ
ଠିଆ ହୋଇଥିବା ଇତିହାସ
କୋଟି କୋଟି ଜଳନ୍ତା ଆଖିର ଇଜ୍‌ଲାସରେ
ଠିଆ ଲଙ୍ଗଳା ,
ଜଗତର ଜଘନ୍ୟତମ ଅପରାଧୀ ହୋଇ ।।

ଇତିହାସକୁ ଜେରା କରୁଥିବେ
ଜଙ୍ଗଲି ଅନ୍ଧାରରେ ସଢୁଥିବା ଗାଉଁଲି ଲୋକମାନେ
ବୁଲେଟ୍ ମାଡ଼ରେ ଟଳି ପଡିଥିବା ଦୋଷହୀନ ନିରୀହମାନେ
ଛାଉଣି ଓ ଛଳନାରେ ଶିକାର ପୃଥିବୀର ଆଦିମ ସନ୍ତାନମାନେ
ତୀର ପରେ ତୀର ହୋଇ ଇତିହାସ ଦେହରେ
ବିନ୍ଧି ଯାଉଥିବ ପ୍ରଶ୍ନମାଳା ।।

କହବେ ହାରାମ୍‌ଜାଦା !
କୋଉଠି ଅଛି ସେ କବି
ଶାଳବଣର ନିଃଶ୍ୱାସ ପରି ଯିଏ ଛୁଇଁଥିଲା ଆମରି ଗାଁ
ଆମ ରକ୍ତର ନିଆଁକୁ ଯିଏ ପହଁଚେଇଥିଲା ଶବ୍ଦରେ
କରତ ପରି ଧାରୁଆ ସୁରରେ
ଯିଏ ଛେଦି ପକାଉଥିଲା ଅତ୍ୟାଚାରର ଗଣ୍ଡି ।।

ତୋର ଜାରଜ ତାଲିକାରେ କିଏ ସବୁ ଏମାନେ

ଖ୍ୟାତନାମା ଶିଖରୀରେ ତୁ ଗାଡିଛୁ
ଯେଉଁମାନଙ୍କର ଝଣ୍ଡା
ବିଳାପ , ପ୍ରଳାପ ଓ ଅପଳାପର ଛନ୍ଦସବୁକୁ
ମହାକାବ୍ୟର ମୁକୁଟ ପିନ୍ଧେଇଛି ତୋର ଛଦ୍ମହାତ
କିଏ ସେଇ
ଲୋଭୀ ଶାଗୁଣାର ଉତର ପୁରୁଷ
ଇନ୍ଦ୍ରଧନୁର ମିଛ ମୂଳକରେ ଫୁଲଧନୁର ପଙ୍ଗପାଳମାନେ ?

ଆଜି ଆମେ ଠୋକର୍ ମାରୁଛୁ
ପାଣିର ଗାର ପରି ସେଇ ସବୁ ଶବ୍ଦ ଓ ଅର୍ଥଙ୍କୁ
ପାଣିଚିଆ ଛନ୍ଦ , ଲୟ ଓ ଯାତିପାତକୁ
ଆମେ ଠିଆ ଫାଡି ଦେଉଛୁ
ମାନପତ୍ର , ପାଟ ଗାମୁଛା , ଟଙ୍କାଥଳିରେ ମଣ୍ଡିତ
ମହାକବିମାନଙ୍କର ରଙ୍ଗୀନ ପୋଷ୍ଟର ।।

ଫେରାଇ ଦେ' ଆମକୁ ଆମ କବିକୁ
ଫେରାଇ ଦେ' ଆମର ନିଆଁଗୀତ
ଆମର ରକ୍ତର ଖଲ୍ ଖଲ୍ ଧାରା
ଫେରା' ଫେରା' ଆମକୁ ଆମର
ମୁକ୍ତିଖୋର ମୁହଁ ।।
ଅପ୍ରାଧୀ ଇତିହାସ
କିଛି କହିପାରିବ ନାହିଁ ଉତରରେ
ଜନତାର ରାୟ ମୁତାବକ
କବିର କଲମ ବର୍ଚ୍ଛା ହୋଇ
ଚିରି ଦେଇଯିବ ଇତିହାସର ଛାତି
ତା'ର ରକ୍ତାକ୍ତ ଶବ ଝୁଲେଇ ଦିଆଯିବ
ପ୍ରତ୍ୟେକ ଗାଁ ମୁଣ୍ଡରେ - ବରଗଛ ଡାଳେ ।।

*୧୩/୮୪/୨୩୩୫ , ଶାସ୍ତ୍ରୀନଗର,ୟୁନିଟ୍-୪ , ଭୁବନେଶ୍ୱର ,*
*ସୌଜନ୍ୟ - ନିସାନ୍*

- କୁଇ ଗୀତ -

( ଦାସୁରାମ୍ ଲାଲ୍‌ସଲାମ୍)

# ଦାସୁରାମ ପାଟୁ ଜହାରି ଗାଡ଼ି

ଦେଶା ବାଗା ଲୋକୁ ବାଗା ତ୍ରେବି ମାଚି ଡ଼େ ଦାଦା
ଓ୍ୱିରା ବାଗା ବର ବାଗା ତ୍ରେବି ମାଚି ଡ଼େ ଦାଦା ।
ଇଡ୍ଡୁ ତୁହାନା କୁଡ଼ି ତୁହାନା ତ୍ରେବି ମାଚି ଡ଼େ ଦାଦା
ମେରା ତୁହାନା ନେଡା ତୁହାନା ତ୍ରେବି ମାଚି ଡ଼େ ଦାଦା ।। - (ଓ୍ୱେଡ଼ପା)
ହାଜି ଲୋକୁ ନିଆ ପାନାନି ଲୋକୁ ନିଆ ଗ୍ରାପେ ମଚିଡ଼େ ଦାଦା
ବୁଦି ହେଲାନି ଏଲୁ ହେଲାନି ଲୋକୁନିଃଆ ଗ୍ରାପେ ମାଚିଡ଼େ । (୧)
କୁଇ କାତା କୁଇ ଅରା ଗ୍ରାପେ ମାଚିଡ଼େ ଦାଦା
କୁଇ କ୍ରାହା କୁଇ ଗାଡ଼ି ଗ୍ରାପେ ମାଚିଡ଼େ ଦାଦା ।। (୨)
ନିନ୍ଦା କ୍ରାହା ନିନ୍ଦା ଗାଡ଼ି ମୁଷ୍ଟନି ବାଗାଡ଼େ ଦାଦା
ବ୍ଲେନ୍ଦା ଗାଟାରି ପଙ୍ଗକାରି ଗାଟାରି ହେ୍‌ସି ଆତେରି ।। (୩)
ନିନ୍ଦା ରୋଗୁ ନିନ୍ଦା ନମେରି ତା ଅସା ମାନାତିଡ଼େ ଦାଦା
ଲୋକୁ ବାଗା ଦାଲା ବାଗା ଅସା ହିତିଡ଼େ ଦାଦା ।। (୪)
ନେହି ପାହେରି ନେହି କାତା ତସାନା ହାତିଡ଼େ ଦାଦା
ଦାଦା ଦାସୁରାମ ହିଂଜାନାମ୍ମୁ ନିଙ୍ଗେ ପାଟୁ ଜହାରି ।। (୫)
ନିନ୍ଦା କ୍ରାହା ନିନ୍ଦା ଗାଡ଼ି ଇସିଙ୍ଗି ନକିନେଡ଼େ ଦାଦା
ଏଦା ବାଗା ହିଂଜାନାମ୍ମୁଡ଼େ ଦାଦା ପାଟୁ ଜହାରି ।। (୬)

- ଲକ୍ଷ୍ମଣ , ମୋହନ , ମାଜି

୧୭/୧୧/୦୭

(ଓ୍ୱିହିତେ)

# ଶହୀଦ ସାଥୀ ଦାସୁରାମ

ପ୍ରକାଶ କୁମାର

ବସନ୍ତର ତୁଫାନ ବାଦଲରେ
ପାହାଡ଼କୁ ଫଟାଇକରି
ନୂତନ ଫସଲର ଆଗମନରେ
ଆମେ ତୁମକୁ ସ୍ୱାଗତ କରୁଛୁ ! ସାଥୀ ଦାସରାମ୍ ।
ସାମନ୍ତୀ ସାମ୍ରାଜ୍ୟବାଦୀ ପାହାଡ଼ ଚାପରେ
ନିଜକୁ ଲହୁ ଲୁହାଣ କରିଦେଲ
ନୂଆ ସମାଜ ଗଠନ ପାଇଁ ,
ସଂଗ୍ରାମ ଭିତରେ । ସାଥି ଯାକବ୍ !
ସାମାଜିକ-ଆର୍ଥିକ ବିଷମତାର
ପ୍ରତିବାଦ ଓ ପ୍ରତିରୋଧେ
ଅମୂଲ୍ୟ ଜୀବନକୁ ତ୍ୟାଗକଲ ,
ଜନତାଙ୍କ ସେବାରେ । ସାଥି ଜୟରାମ୍ !
ନିଜର ସ୍ୱାର୍ଥ ଠାରୁ ଉପରକୁ
ଜଗତର ଦୁଃଖକୁ ଅପଣାଇ
ତୁମେ କୋହିନୂର ହିରା ଭଳି ଚମକାଇଲ
ସୃଜନଶୀଳ ଜନ ଲଢ଼େଇ ସୃଷ୍ଟି କଲେ । ସାଥି ପାଙ୍ଗି ଦାଦା !
ତୁମର ନିଷ୍ଠା , ଆତ୍ମବିଶ୍ୱାସ ଲଢ଼େଇ
ଶତ୍ରୁର ନିଦ ହଜେଇଦେଲା ,
ତୁମେ ପ୍ରମାଣ କରିଦେଲ ,
ବିପ୍ଳବ ଆଉ ବିଚାରଧାରାର ସଂପର୍କକୁ , ସାଥି ମାଲେକା ଦାସୁରାମ ।
ମାଓବାଦର ଆଦର୍ଶେ ଶାଣିତ
ତୁମେ କ୍ରାନ୍ତିର ଏକ ହତିଆର ଥିଲ ,
ତୁମ ଶବ୍ଦବୀଣାର ଝନ୍‌କାରେ
ଥରୁ ଥିଲା ଶୋଷକ ସରକାର । ସାଥି କବିବର
ତୁମେ ଜନବାଦୀ ଦୁନିଆଁରେ
ଶାଣିତ ପ୍ରତିବାଦୀ ମୁଖ

ନୃତ୍ୟ-ଗୀତ ତୁମ ଜଙ୍ଗଲର ନିଆଁ ,
ତୁମେ କୁଇ ଲିପି ଉଦ୍ଭାବକ , ଆହେ କୁଇ ସମ୍ରାଟ ।
ତୁମକୁ ମୃତ୍ୟୁ ବି ଛଡ଼ାଇ ପାରିବନି
ଆମ ପାଖେ ଅଛି ତୁମ କବିତା
ନିଆଁ ସାଜି ଧ୍ୱଂସ କରିବ ଶୋଷକ ସମାଜ ,
ନବଜନବାଦୀ ଦୁନିଆଁର ଉଦୟହେବ ।
ଲାଲସଲାମ୍ ଦାସରାମ !

## ସମ୍ବାଦ ଜଗତ

## ବିଭିନ୍ନ ସ୍ଥାନରେ ସାଥି ଦାସୁରାମ ମାଲେକାଙ୍କ ସ୍ମୃତି ସଭା

ସାଥି ଦାସୁରାମ ମାଲେକାଙ୍କ ସ୍ମୃତିରେ ଭୁବନେଶ୍ୱରରେ ଗତ ୧୫/୦୯/୨୦୦୭ ତାରିଖରେ ବରିଷ୍ଠ କଳାକାର , କବି , ଲେଖକ ଓ ବୁଦ୍ଧିଜୀବି ମାନେ ବିପ୍ଳବୀ କବି ରବି ସିଂଙ୍କ ସଭାପତିତ୍ୱରେ ଏକ ସଭାରେ ଏକତ୍ରିତ ହୋଇଥିଲେ । ସେହିପରି ଗତ ୧୯/ ୦୯/୨୦୦୭ ରେ ଗଜପତି ଜିଲ୍ଲା ରାଇପଙ୍କା ଠାରେ ପୂର୍ବତନ ସରପଂଚ ଗିନି ମାଝୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ସାଥି ଦାସୁରାମଙ୍କ ସ୍ମୃତି ସଭାକୁ ଭଣ୍ଡୁର କରିବା ପାଇଁ ଅଂଚଳରେ ଶହ ଶହ ଅର୍ଦ୍ଧସାମରିକ ବାହିନୀଙ୍କ ଦ୍ୱାରା ତଲାସୀ ଅଭିଯାନ ଜରୀଆରେ ଆତଙ୍କ ସୃଷ୍ଟି କରାଯାଇଥିଲା । ପ୍ରାୟ ୧୦ ଦିନ ଧରି ସେ ଅଂଚଳରେ ଏକ ସୀମାନ୍ତ ଯୁଦ୍ଧକ୍ଷେତ୍ରର ଚିତ୍ର ଦେଖିବାକୁ ମିଳିଥିଲା । ଖୋଲା ଟ୍ରକରେ ସଶସ୍ତ୍ର ଅର୍ଦ୍ଧସାମରିକ ବାହିନୀ ଦୁଇପଟକୁ ବଂଧୁକ ଦେଖାଇ ମାର୍ଚ୍ଚ କରୁଥିଲେ । ଏହି ଆତଙ୍କ ସତ୍ୱେ ସଭାରେ ତିନିଶହରୁ ଅଧିକ ଶୋକାକୁଳ ଜନତା ଭାଗନେଇ ତାଙ୍କର କ୍ରୋଧ ବ୍ୟକ୍ତ କରିଥିଲେ । ଏହି ସଭାରେ ବକ୍ତବ୍ୟ ରଖିଥିଲେ ସିପିଆଇ(ଏମ୍.ଏଲ୍)-କାହ୍ନୁ- ରାମଚନ୍ଦ୍ର ଦଳର ରାଜ୍ୟ ସଂପାଦକ ସାଥି ଗଣନାଥ ପାତ୍ର , ପରିବେଶବିତ୍ ପ୍ରଫୁଲ୍ଲ ସାମନ୍ତରାୟ , ଲୋକ ସଂଗ୍ରାମ ମଂଚର ସନ୍ତୋଷ ମଳିକ , ସିପିଆଇ(ଏମ୍.ଏଲ୍) ନ୍ୟୁଡେମୋକ୍ରାସୀର ତପନ ମିଶ୍ର , ସାମ୍ବାଦିକ ବିବେକ ଦାସ , ନାରୀ ଅତ୍ୟାଚାର ବିରୋଧୀ କମିଟିର ନେତ୍ରୀ ରୁମିତା କୁଣ୍ଡୁ , ନାରୀ ମୁକ୍ତି ସଂଘର ଆବାହିକା ପ୍ରତିମା ଦାସ , ହାଇକୋର୍ଟର ଓକିଲ ପ୍ରଶାନ୍ତ ଜେନା , ପାରଳାଖେମୁଣ୍ଡିର ଓକିଲ ଉପେନ୍ଦ୍ର

ନାୟକ , ଦମନ ପ୍ରତିରୋଧ ମଂଚର ଆବାହକ ଦଣ୍ଡପାଣି ମହାନ୍ତି ,`ଓଡ଼ିଶା ଫରେଷ୍ଟ ମଜଦୂର ୟୁନିଅନର ଯାକୁବ ମାଝି ଇତ୍ୟାଦି । ସାଥୀ ଦାସୁରାମଙ୍କ ମାଆ ଓ ସାଥୀ ଯାକୁବ ମାଝୀ କୁଇ ଭାଷାରେ ବକ୍ତବ୍ୟ ରଖିଥିଲେ ।

ସଭାରେ ସର୍ବସମ୍ମତି କ୍ରମେ ଏକ ପ୍ରସ୍ତାବ ଗୃହୀତ ହୋଇ ଓଡ଼ିଶା ସରକାରର ମହାମାରୀ ରୋକିବାରେ ବିଫଳତା ଓ ଦମନରାଜର ନିନ୍ଦା କରାଯାଇଥିଲା । ସ୍ଥାନୀୟ ସରପଂଚ ଓ ପୂର୍ବତନ ସମିତି ସଭ୍ୟ ପ୍ରଶାନ୍ତ ମାଝି , ସନିଆ ଗମାଙ୍ଗ ଆଦି ସଭାର ସଫଳତା ପାଇଁ ବିଶେଷ ସାହାଯ୍ୟ କରିଥିଲେ । ସଭା ଶେଷରେ ପ୍ରତି ଆଦିବାସୀ ଗାଁରୁ ଟଙ୍କାଏ ଲେଖାଏଁ ହେଉ ସାହାଯ୍ୟ ନେଇ ରାଇପଙ୍କା ଠାରେ ଦାସୁରାମଙ୍କର ଏକ ପ୍ରତିମୂର୍ତି ସ୍ଥାପନ କରିବାକୁ ନିଷ୍ପତି ହେଲା ।

*ସୌଜନ୍ୟ - ଇନ୍‌କିଲାବ*

## ରାଇପଙ୍କା ସଭାରେ ଗୃହୀତ ହୋଇଥିବା ପ୍ରସ୍ତାବ

ଓଡ଼ିଶାର ଗଜପତି ଜିଲ୍ଲା ଠାରୁ ଆରମ୍ଭ କରି ରାୟଗଡ଼ା , କୋରାପୁଟ , କଳାହାଣ୍ଡି ଜିଲ୍ଲାର ଆଦିବାସୀ ଅଂଚଳରେ ହଇଜାରେ ଶହଶହ ଲୋକଙ୍କ ମୃତ୍ୟୁ ପାଇଁ ସରକାର ଦାୟୀ । ଲୋକଙ୍କ ପେଟରେ ଦାନା ନାହିଁ , ଲୋକଙ୍କ ପାଇଁ କାମ ନାହିଁ , ହସ୍‌ପିଟାଲ ନାହିଁ କି ଥିବା ହସ୍‌ପିଟାଲ୍‌ରେ ଔଷଧ ନାହିଁ । ତେଣୁ ସରକାରଙ୍କ ଅବହେଳା ପାଇଁ ମହାମାରୀ ବ୍ୟାପିଲା । ଦାସୁରାମଙ୍କ ପରି ଆଦିବାସୀ ବିପ୍ଲବୀ କବିଙ୍କ ବିରୋଧରେ ପୋଲିସ୍‌ର ମିଥ୍ୟା ଅଭିଯୋଗ - ୱାରେଂଟ ଯୋଗୁଁ ନିଜେ ଦାସୁରାମ ଚିକିତ୍ସାରୁ ବଂଚିତ ହୋଇ ପ୍ରାଣ ତ୍ୟାଗକଲେ । ତେଣୁ ରାଜ୍ୟ ସରକାର ସମସ୍ତ ମୃତକଙ୍କ ପରିବାରକୁ ଆର୍ଥିକ କ୍ଷତିପୂରଣ ଦିଅନ୍ତୁ ।

ଦାସୁରାମ ସାହିତ୍ୟ ଓ ସଂଗୀତ କୁଇ ଭାଷାରେ ସୃଷ୍ଟି କରିପାରିଥିଲେ । ଏହି ଭାଷା ଓଡ଼ିଶାର ବହୁ ଆଦିବାସୀଙ୍କ ମାତୃଭାଷା । ଏହି ଭାଷାକୁ ସରକାରୀ ମାନ୍ୟତା ଦେଇ ଓଡ଼ିଆ-ଭାଷାର ଏକ ସହଯୋଗୀ ଭାଷା ରୂପେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଆଜିର ସ୍ମୃତି ସଭାରେ ଯୋଗ ଦେଇଥିବା ଜନଗଣ ଦାବି କରୁଛନ୍ତି ।

## ଦାସୁରାମ ମାଲେକାଙ୍କ ବିଷୟରେ ବୁର୍ଜୁଆ ସମ୍ବାଦପତ୍ର ଦେଇଥିବା ମତ

# ପୋଲିସ୍ ବି ନିର୍ଦ୍ଦୋଷକୁ ସନ୍ତ୍ରାସବାଦୀ କରିପାରେ

ପୋଲିସ୍ ଜଣେ ନିର୍ଦ୍ଦୋଷ ଯୁବକକୁ ମିଛ କେସ୍ ଦେଇ ସମାଜ ଆଖିରେ କିପରି ସନ୍ତ୍ରାସବାଦୀଟିଏ କରିଦେଇପାରେ ତାହାର ଏକ ଉଦାହରଣ ହେଉଛନ୍ତି ଦାସୁରାମ ମାଲେକା । ୨୭ ବର୍ଷର ଏହି ଯୁବକ ଜଣକ ଖାଲି ସନ୍ତ୍ରାସବାଦୀ ପାଲଟି ଗଲେନି , ଦୀର୍ଘ ୧୬ ମାସ ଧରି ଜେଲ୍‌ରେ ଯେଉଁ ନିର୍ଯ୍ୟାତନା ପାଇଲେ ତାହାର କରୁଣ କାହାଣୀ ରବିବାର ଦିନ ଏଠାରେ ଆୟୋଜିତ ଏକ ସାମ୍ବାଦିକ ସମ୍ମିଳନୀରେ କହିଛନ୍ତି ।

୨୦୦୩ ମସିହା ଫେବୃୟାରୀ ୬ ତାରିଖ ଦିନ ୧ ଘଂଟା ୪୦ ମିନିଟ୍ ସମୟରେ ଓଡ଼ିଶାର ରାୟଗଡ଼ା ରେଳଷ୍ଟେସନ୍ ପାଖ ମା'ମଙ୍ଗଳା ହୋଟେଲ ପଛପଟେ ପରିସ୍ରା କରୁଥିଲେ । ଆନ୍ଧ୍ରର ସାଦା ପୋଷାକଧାରୀ ଗ୍ରେହାଉଣ୍ଡସ୍ ପୋଲିସ୍ ମାନେ ତାଙ୍କୁ ଅପହରଣ କରିନେଇଥିଲେ । ୧୬ ମାସ ଧରି ତାଙ୍କୁ ମିଛ କେସ୍ ଦ୍ୱାରା ତାଡ଼ନା ଦେଲେ ଏବଂ ସରକାରୀ ଦୃଷ୍ଟିରେ ତାଙ୍କୁ ସନ୍ତ୍ରାସବାଦୀରେ ପରିଣତ କଲେ । ତେଲୁଗୁ ଭାଷା ଜାଣି ନଥିବାରୁ ତାଙ୍କୁ ବେଶି ମାଡ଼ ଦେଇଥିଲେ ବୋଲି ସେ ଏଠାରେ ଅଭିଯୋଗ କରିଛନ୍ତି । ପାର୍ବତୀପୁର ଇନ୍ସପେକ୍ଟର ପି.ବିଜୟକୁମାର ତାଙ୍କୁ ବେଶି ମାଡ଼ ଦେବା ସାଙ୍ଗକୁ ଯଯାତି କେସ୍‌ରେ ତାଙ୍କୁ ପକାଇ ଦେବାକୁ ଧମକ ଦେଇଥିବା ସେ ପ୍ରକାଶ କରିଛନ୍ତି । ଆନ୍ଧ୍ର ପୋଲିସ୍‌ର ଦମନଲୀଳା ପରେ ଓଡ଼ିଶା ପୋଲିସ୍ ମଧ ତାଙ୍କ ଉପରେ କମ୍ ଦାଉ ସାଧିନି । ମାର୍ଚ୍ଚ ୬ ତାରିଖରେ ମିଛ କେସରେ ଓଡ଼ିଶା ପୋଲିସ ତାଙ୍କୁ ଆନ୍ଧ୍ରରୁ ଓଡ଼ିଶା ଆଣିଥିଲେ । ଆନ୍ଧ୍ରରୁ ଆଣି ତାଙ୍କୁ ଗଜପତି ଏସ୍.ପି ଧୀରେନ୍ଦ୍ର କୁଟେଙ୍କ ଘରକୁ ନିଆଯାଇଥିଲା । ସେଠାରେ ଗଜପତି ଜିଲ୍ଲାର ମାଣ୍ଡିମେରା ପଂଚାୟତର କେତେକ ଲୋକଙ୍କୁ ଧରାଇ ଦେବାକୁ କହିଥିଲେ । କାହାକୁ ଧରେଇ ନଦେଲେ ସେଠି ଗୁଳିକରି ଫିଙ୍ଗି ଦିଅ ବୋଲି ମଧ ଏସ୍.ପି କହିଥିବାର ସେ ଏଠାରେ ପ୍ରକାଶ କରିଛନ୍ତି । ପାର୍ବତୀପୁରରେ ଗ୍ରେହାଉଣ୍ଡସ୍ ଶିବିରରେ ମାଡ଼ ଖାଉଥିବା ବେଳେ ସେ ସମୟରେ ଏକ ରାସ୍ତାରୋକ ଆନ୍ଦୋଳ ହୋଇଥିଲା । ସେହି ଆନ୍ଦୋଳନରେ ଗଛ କଟା କେଶରେ ମିଛରେ ଫସାଇ ଦିଆଯାଇଥିଲା । ବର୍ତମାନ ସେ ଜାମିନରେ ଆସିଥିବା କହିଛନ୍ତି ।

ସୂଚନାଯୋଗ୍ୟ ଯେ , ଦାସୁରାମ ଜଣେ ନିରୀହ ଆଦିବାସୀ ତଥା କୁଇ ଭଷାର

କବି ଓ ଲେଖକ । ତାଙ୍କ କବିତା ଆଦିବାସୀର ଦୁଃଖ ଓ ବିପ୍ଳବ ଉପରେ ଆଧାରିତ । ସେ ହେଉଛନ୍ତି ରାୟଗଡ଼ା ଗଜପତି ଜିଲ୍ଲାର ଗରିବ ଆଦିବାସୀ ଚାଷୀ ମୂଲିଆ ସଂଗଠନ 'ଚାଷୀ ମୂଲିଆ ସମିତ' ର ଜଣେ ନେତା । ଏହି ସଂଘଟି ସରକାରଙ୍କ ଦ୍ୱାରା ବେଆଇନ ଘୋଷିତ ହୋଇନାହିଁ । ମାଲିକ , ଜମିଦାର ଓ ସରକାରୀ କଳ ସେମାନଙ୍କ ଠାରୁ ଜମି ଆଉ ଜଙ୍ଗଲ ଛଡ଼ାଇ କରି ନେଉଛନ୍ତି । ଏହାର ପ୍ରତିବାଦ କରିବା ଏହି ସମିତିର ମୂଳ ଲକ୍ଷ୍ୟ । ଏଥିରେ ଅତିଷ୍ଠ ହୋଇ ପୋଲିସ୍ ଓ ପ୍ରଶାସନ ତାଙ୍କ ଉପରେ ଦମନଲୀଳା କରିଛି ବୋଲି ସେ ଅଭିଯୋଗ କରିଛନ୍ତି । ଓଡ଼ିଶାରେ ଆର୍.ଉଦୟଗିରୀ , ଗୁଣୁପୁର ଓ ପାରଳାଖେମୁଣ୍ଡି ଜେଲରେ ବହୁ ନିରୀହ କୁଇ , ସରା ଓ ଅନ୍ୟାନ୍ୟ ଆଦିବାସୀ ଦଳିତ ଲୋକ ସରକାରଙ୍କ ମିଛ କେଶରେ ଦୁଃଖ ପାଉଛନ୍ତି ଏବଂ ସରକାର ଏହିମାନଙ୍କ ଉପରେ କଠୋର ନୀତି ଅବଲମ୍ବନ କରୁଛନ୍ତି । ଯେତେଦିନ ପର୍ଯ୍ୟନ୍ତ ତାଙ୍କର ନ୍ୟାଯ୍ୟ ଦାବି ପୂରଣ ନ ହୋଇଛି ସେତେଦିନ ପର୍ଯ୍ୟନ୍ତ ସେ ଆନ୍ଦୋଳନ ଜାରି ରଖିବେ ବୋଲି ଜଣାଇଛନ୍ତି ।

*ସୌଜନ୍ୟ ଧରିତ୍ରୀ - ୨୪/୮/୨୦୦୪*

## ନକ୍ସଲ ନାଁରେ ବିପ୍ଳବୀ କୁଇ କବି ଦାସୁରାମଙ୍କୁ ପୋଲିସର ନିର୍ଯ୍ୟାତନା

ନକ୍ସଲ ଦମନ ନାଁରେ ଓଡ଼ିଶାର ସୀମାନ୍ତ ଜିଲ୍ଲାମାନଙ୍କରେ ଉଭୟ ଓଡ଼ିଶା ଓ ଆନ୍ଧ୍ର ପୋଲିସ୍ ଦାଦାଗିରି ଦେଖାଉଛି ବୋଲି ଅଭିଯୋଗ ହୋଇଆସୁଛି । ଏଥିରେ ଓଡ଼ିଶା ପୋଲିସ ଆନ୍ଧ୍ର ପୋଲିସର ସାନଭାଇ ଭୂମିକା ନେଇଛି । ତେବେ ଗଜପତି ଜିଲ୍ଲା ଅଡ଼ବା ଅନ୍ତର୍ଗତ ଗୁଡ଼ିପାଙ୍ଗା ଗ୍ରାମର ଜଣେ ନିରୀହ ଆଦିବାସୀ ଯୁବକ ତଥା ବିପ୍ଳବୀ କୁଇ କବି ଓ ଗାୟକ ଦାସୁରାମ ମାଲେକା (ମଳିକ) ଙ୍କୁ ନକ୍ସଲପନ୍ଥୀ ଆଖ୍ୟା ଦେଇ ପୋଲିସ୍ କିପରି ନିର୍ଯ୍ୟାତନାର ସୀମା ଲଂଘନ କରିଛି ସେହି ଅନୁଭୂତିକୁ ଆଜି ଏଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ସ୍ୱୟଂ ଦାସୁରାମ ବର୍ଣ୍ଣନା କରିଥିଲେ । ମିଥ୍ୟା କେସ୍‌ରେ ତାଙ୍କୁ ପୋଲିସ ଗିରଫ କରିବା ପରେ ଦୀର୍ଘ ୧୬ ମାସର ବନ୍ଦୀ ଜୀବନ କଟାଇ ଏବେ ଜାମିନ୍‌ରେ ଫେରିଛନ୍ତି ।

ନିଜ ଅନୁଭୂତି ବର୍ଣ୍ଣନା କରି ଦାସୁରାମ କହିଥିଲେ , ୨୦୦୩ ଫେବୃଆରୀ ୬ ତାରିଖରେ ରାୟଗଡ଼ା ରେଳଷ୍ଟେସନ୍ ପାଖରୁ ଆନ୍ଧ୍ରର ସାଧା ପୋଷାକଧାରୀ ଗ୍ରେହାଉଣ୍ଡସ୍ ଦୁଇଜଣ ପୋଲିସ ତାଙ୍କୁ ମାଡ଼ମାରି ଜବରଦସ୍ତ ମୋଟର ସାଇକେଲରେ ବସାଇ

ନେଇଯାଇଥିଲେ । ଏହାପରେ ଆରମ୍ଭ ହୋଇଗଲା ନିର୍ଯ୍ୟାତନା । ସେଠାରୁ ଆନ୍ଧ୍ରର କମରଡ଼ା ପୋଲିସ୍ ଥାନାକୁ ନେଇଯାଇ ତାଙ୍କୁ ପୂରା ଲଙ୍ଗଳା କରି ହାଜତରେ ରଖାଗଲା । ତାଙ୍କୁ ନକ୍ସଲ ଭାବେ ପରିଚିତ କରାଇବାକୁ ହାତରେ ବୋମା ଧରିବାକୁ ବାଧ କରାଗଲା । ତାଙ୍କଠାରୁ ପଇସାପତ୍ର , ହାତଘଣ୍ଟା ଛଡ଼ାଇ ନିଆଗଲା । ସେଠାରୁ ପାର୍ବତୀପୁର ଥାନା ନିଆଯାଇ ପ୍ରବଳ ମାଡ଼ ମାରିବା ସହ ନକ୍ସଲ ପୋଷାକ ପିନ୍ଧି ଓଡ଼ିଶାର ଗୁଡ଼ାରୀ ଅଂଚଳର ପାରକୁପୁଡ଼ା ଗାଁକୁ ଯାଇ ନକ୍ସଲ ନାଁରେ ଗାଁ ଲୋକଙ୍କୁ ଧରାଇଦେବାକୁ ବାଧ କରାଗଲା । ତା'ପରେ ରାତିରେ ତାଙ୍କୁ ବିଜୟନଗର ନିଆଯାଇ ସେଠାରେ ଏକ ଗୁପ୍ତ ଆଡ୍ଡାକୁ ନିଆଯାଇଥିଲା । ସେଠାରେ ପୋଲିସମାନେ ତାଙ୍କୁ ପାଟିରେ ପିସ୍ତଲ୍ ପୁରାଇବା ସହ ମାଡ଼ ମାରି । ନକ୍ସଲଙ୍କ ବିଷୟରେ କହିବାକୁ ବାଧ କରିଥିଲେ । ଏହା ମଧରେ ଆନ୍ଧ୍ରର ଏହି ଜାଗାରେ ରାୟଗଡ଼ା ଜିଲ୍ଲା ଗୁଣୁପୁର ଓ ପଦ୍ମପୁର ପୋଲିସ୍ ପହଁଚି ତାଙ୍କୁ ପଚରାପଚରି କରିବା ସହ ପ୍ରବଳ ମାଡ଼ ମାରିଲେ ଏହିପରି ୬ ତାରିଖରୁ ସାତଦିନ ଯାଏଁ ଅତ୍ୟାଚାର ଚାଲୁ ରହିଲା । ମାଡ଼ ମାରିବା ଯୋଗୁଁ ଦୁଇଟା ଠେଙ୍ଗା ଭଙ୍ଗିଯିବା ସହ ଅନେକ ରବର ପାଇପ ମଧ ଖଣ୍ଡ ଖଣ୍ଡ ହୋଇଗଲା । କରେଂଟ ଦିଆଗଲା । କରେଂଟ ତାର ଧରିବାକୁ ବାଧ କରାଗଲା । ଏହା ଭିତରେ ସେ ଅନେକ ସମୟରେ ଚେତାଶୂନ୍ୟ ହୋଇ ପଡୁଥାଆନ୍ତି । ଶେଷରେ ୨୦ ତାରିଖରେ ଥାନାକୁ ନେଇ ପୋଲିସ ମିଥ୍ୟା କେଶ୍ ରିପୋର୍ଟ ଲେଖାଇ ଫଟୋ ଉଠାଇଲେ । ୨୧ ତାରିଖରେ ବୋବୁଲି କୋର୍ଟକୁ ନେଇ ପୁଣି ଥାନାକୁ ଆଣିଲେ । ଆନ୍ଧ୍ରର ଏକ ଗାଁରେ ନକ୍ସଲ କାର୍ଯ୍ୟରେ ଲିପ୍ତ ଥିବା ବେଳେ ପୋଲିସ୍ କୁଆଡ଼େ ୨୦ ତାରିଖରେ ତାଙ୍କୁ ଧରିଛି ଦର୍ଶାଇ ମିଥ୍ୟା କେସ୍ ଦାଏର କରାଗଲା । ପୋଲିସ ମାଡ଼ ମାରିବା ସଂପର୍କରେ କୋର୍ଟରେ କହିଲେ ଏନ୍‌କାଉଂଟର୍ ନାମରେ ଜୀବନରୁ ମାରିଦେବା ପାଇଁ ଧମକାଇଲେ । ଏହି ଭୟରେ ଦାସୁରାମ ପୋଲିସ୍ ଚାହିଁବା ଅନୁଯାୟୀ କୋର୍ଟରେ ବୟାନ ଦେଲେ । ୨୨ ତାରିଖରେ ବିଶାଖାପାଟଣା ଜେଲ୍ ଯାଇ ସେଠାରେ ମାର୍ଚ୍ଚ ୬ ତାରିଖ ଯାଏଁ ଦାସୁରାମ ରହିଲେ । ମାର୍ଚ୍ଚ ୬ରେ ତାଙ୍କୁ ଓଡ଼ିଶା ପୋଲିସ ନେଇଆସିଲେ । ଗଜପତି ଜିଲ୍ଲାର ବିଭିନ୍ନ ନକ୍ସଲମାନଙ୍କୁ ଧରାଇ ନ ଦେଲେ ତାଙ୍କୁ ଗୁଳି କରି ମାରିଦେବାକୁ ଏସ୍.ପି ଧମକ ଦେଲେ । ମିଥ୍ୟା କେସ୍ ରେ ଉଦୟଗିରୀ କୋର୍ଟ ହାଜତରେ ୭ ଦିନ ରଖାଗଲା । ଏହାପରେ ଆଉ କେତେକ ମିଥ୍ୟା କେସ୍ ଲଗାଇ ତାଙ୍କୁ ଜେଲ୍ ହାଜତକୁ ପଠାଇ ଦିଆଗଲା ।

ଖାଲି ସେତିକି ନୁହେଁ , ଜେଲ୍‌ରେ ଥିବା ବେଳେ ତାଙ୍କ ଉପରେ ଦମନ ନିର୍ଯ୍ୟାତନା ସଂପର୍କରେ ଭୁବନେଶ୍ୱରରୁ ଏକ ତଥ୍ୟ ଅନୁସନ୍ଧାନକାରୀ ଦଳ ରିପୋର୍ଟ ନେଇଥିଲେ ।

ସେ ଦେଇଥିବା ବୟାନ ଉପରେ ଏସ୍.ପି ପ୍ରତିକ୍ରିୟାଶୀଳ ହୋଇ ତାଙ୍କ ଉପରେ ମାନସିକ ନିର୍ଯ୍ୟାତନା ଦେଇଥିଲେ ବୋଲି ଦାସୁରାମ ଅଭିଯୋଗ କହିଛନ୍ତି । ତାଙ୍କ ବୁଢ଼ୀ ମା' ଓ ସ୍ତ୍ରୀଙ୍କୁ ଜେଲ୍ ଭିତରେ ତାଙ୍କୁ ଦେଖା କରିବାକୁ ମନା କରାଗଲା । ଶେଷରେ ଜାମିନ୍ ରେ ଆସିବା ପାଇଁ ତାଙ୍କୁ ଘରର ବଳଦ ଓ କଂସା ଗିନା ବିକା ବନ୍ଧା କରିବାକୁ ପଡ଼ିଲା । ସରକାରଙ୍କ ଏପରି ମିଥ୍ୟା କେଶ୍ ଯୋଗୁଁ ତାଙ୍କ ପରି ହଜାର ହଜାର ନିରୀହ ଗରିବ ଲୋକ ସର୍ବସ୍ୱାନ୍ତ ହୋଇଛନ୍ତି ବୋଲି ଦାସୁରାମ କହିଥିଲେ । ଓଡ଼ିଶାର ଆର୍-ଉଦୟଗିରୀ , ଗୁଣୁପୁର ଓ ପାରଳାଖେମୁଣ୍ଡି ଜେଲ୍‌ରେ ବହୁ ନିରୀହ କୁଇ, ଶବରା ଓ ଅନ୍ୟାନ୍ୟ ଆଦିବାସୀ ଦଳିତ ଲୋକ ମିଛ ନକ୍ସଲ କେସ୍ ରେ ବନ୍ଦୀ ଜୀବନଯାପନ କରୁଛନ୍ତି ବୋଲି ସେ କହିଥିଲେ ।

ପ୍ରକାଶ ଯୋଗ୍ୟ , ଦାସରୁରାମ ମାଲେକା ଜଣେ ଆଦିବାସୀ କୁଇ ସଂପ୍ରଦାୟର ଗରିବ ଯୁବକ । କୁଇ ଓ ସରା ସଂପ୍ରଦାୟର ଗରିବ ଲୋକଙ୍କ ଦୁଃଖ , ଦୁର୍ଦ୍ଦଶା ତଥା ସେମାନଙ୍କ ପ୍ରତି ହେଉଥିବା ସରକାରୀ ଅନ୍ୟାୟ୍ ତାଙ୍କୁ ନିଜର କବିତା ରଚନା ମାଧ୍ୟମରେ ବିପ୍ଳବୀ ରାଜନୀତି ପ୍ରତି ଆକୃଷ୍ଟ କରିଛି ବୋଲି ଦାସୁରାମ କୁହନ୍ତି । ସରକାର କହିବା ମୁତାବକ ତାଙ୍କର ଅପରାଧ ହେଉଛି ଯେ ଗଜପତି ଜିଲ୍ଲାର ଗରିବ ଆଦିବାସୀ ଚାଷୀ-ମୂଲିଆଙ୍କର ଏକ ସଂଗଠନ 'ଚାଷୀ ମୂଲିଆ ସମିତି'ର ସେ ଜଣେ ନେତା । ଗରିବ ଆଦିବାସୀଙ୍କୁ ନକ୍ସଲ ନାଁରେ ପୋଲିସ୍ ଦମନଲୀଳା ଚାଲିଥିଲେ ମଧ ଓଡ଼ିଶାରେ ନବୀନ ସରକାର କିଛି ନ ଜାଣିବା ପରି ନାଟକ ଦେଖାଉଛି ବୋଲି ଦାସୁରାମ ଅଭିଯୋଗ କରିଥିଲେ ।

*ସୌଜନ୍ୟ - ସମ୍ବାଦ -୨୩/୮/୦୪*

# ଦାସୁରାମ ମାଲେକା : ଓଡ଼ିଶାର 'ଗଦର' !

ଆଦିବାସୀଙ୍କର ସମସ୍ୟା - ତାଙ୍କୁ କିପରି ସରକାର ଓ ସାହୁକାର ଠକୁଛି , ପୋଲିସ୍ କିପରି ନିର୍ଯ୍ୟାତନା ଦେଉଛି , କିପରି ସେମାନେ ମୁକ୍ତି ପାଇବେ , ଏ ବିଷୟରେ ମୁଁ ମୋ କୁଇ ଭାଷାରେ ଗୀତ ଲେଖି ସଚେତନତା ସୃଷ୍ଟି ପାଇଁ ଗୀତ ଗାଉଥିବାରୁ ମୁଁ କ'ଣ ସନ୍ତ୍ରାସବାଦୀ ଆଉ ନକ୍ସଲବାଦୀ , ଏ ପ୍ରଶ୍ନ ସରକାରଙ୍କୁ , ଓଡ଼ିଶାର ଜନସାଧାରଣଙ୍କୁ କରିଛନ୍ତି ଓଡ଼ିଶାର 'ଗଦର' ଦାସୁରାମ ।

ଦାସୁରାମ ମାଲେକା , ବୟସ ୨୭ । ଗ୍ରାମ ଗୁଡ଼ିପାଙ୍ଗା , ପୋ-ମାଣ୍ଡିମେରା , ଭାୟା - ଅଡ଼ବା , ଜିଲ୍ଲା ଗଜପତି । ଆଦିବାସୀ କୁଇ ସଂପ୍ରଦାୟରେ ଜନ୍ମ । ଶିକ୍ଷାଗତ ଯୋଗ୍ୟତା ୭ମ ପାଶ୍ । ପରିସ୍ଥିତି ଓ ପ୍ରକୃତି କୃପାରୁ ବିପ୍ଳବୀ କୁଇ କବି ଓ ଗାୟକ । ତାଙ୍କର ଗୀତ

ସଂଗୀତ ଆଜି କୁଇ ସଂପ୍ରଦାୟ ମଧ୍ୟରେ ବିପ୍ଳବର ବହ୍ନି ଖେଳାଇ ଦେଇଛି । ଠିକ୍ ଯେମିତି ଆନ୍ଧ୍ରର ବିପ୍ଳବୀ କବି ତଥା ପି.ଡବ୍ଲୁ.ଜି. ସମର୍ଥକ 'ଗଦର' । ଆଦିବାସୀ ଚାଷୀ ମୂଲିଆଙ୍କର ଏକ ସଂଗଠନ ଚାଷୀ ମୂଲିଆ ସମିତିର ନେତା । ନିଜ ଗ୍ରାମର ଓ ଆଖପାଖ ଅଂଚଳରେ ଆଦିବାସୀମାନଙ୍କ ଅଧିକାରକୁ ସାବ୍ୟସ୍ତ କରିବାକୁ ଜନମତ ସୃଷ୍ଟି କରିବା ଓ ସରକାରଙ୍କ ବିରୋଧରେ ସଂଗ୍ରାମ କରିବା ଅଭିଯୋଗରେ ୨୦୦୩ ଫେବୃୟାରୀ ମାସରେ ବନ୍ଦୀ ଜୀବନ କାଟି ଗତ ଜୁନ୍ ମାସରେ ଖଲାସ ହୋଇଛନ୍ତି ।

ରବିବାର ଦିନ ଭୁବନେଶ୍ୱରକୁ ଆସିଥିବା ବେଳେ ଦାସୁରାମ ସରକାରୀ ଅବିଚାର , ପୋଲିସର ନିର୍ମମ ନିର୍ଯ୍ୟାତନା ଓ ଜେଲ୍ କର୍ତ୍ତୃପକ୍ଷଙ୍କ ଅମାନବୀୟ ମନୋଭାବ ସଂପର୍କରେ ସାମ୍ବାଦିକମାନଙ୍କ ନିକଟରେ ବୟାନ ଦେଇଥିଲେ । ତାଙ୍କର ଗୋଟିଏ ପ୍ରଶ୍ନ - ମୋର ଭୁଲ୍ କେଉଁଠି ? ସ୍ୱାଧିନ ଭାରତରେ ଅଧିକାର ସାବ୍ୟସ୍ତ କରିବା ପାଇଁ ବିପ୍ଳବୀ ରାଜନୀତି ପ୍ରତି ଆକୃଷ୍ଟ ହେବା , ଆଦିବାସୀଙ୍କ ଦୁଃଖ ଓ ବିପ୍ଳବର କଥା ଗାଇବା କ'ଣ ବେଆଇନ ?

ସରକାରଙ୍କ ଅବିଚାର ଓ ପୋଲିସ ନିର୍ଯ୍ୟାତନା ସତ୍ୱେ ଦାସୁରାମ କୁହନ୍ତି : ଜେଲ୍ ଦଣ୍ଡ ମୋ ମଧ୍ୟରେ ଥିବା ବିପ୍ଳବୀକୁ ଅଧିକ ବିପ୍ଳବ ପାଇଁ ଖୋରାକ ଯୋଗାଇଛି । ଯେ ପର୍ଯ୍ୟନ୍ତ ଗରିବ , ନିରୀହ , ଆଦିବାସୀ ତା'ର ଜମି , ଜଙ୍ଗଲ , ଫେରି ପାଉନାହିଁ ଓ ସାହୁକାର , ପୋଲିସ୍ ଠାରୁ ମୁକ୍ତି ପାଇନାହିଁ , ସେ ପର୍ଯ୍ୟନ୍ତ ମୁଁ ଆଇନର ଗଣ୍ଡି ମଧ୍ୟରେ ସଂଗ୍ରାମ ଜାରି ରଖିବି ।

କାହିଁକି ବିପ୍ଳବୀ ଗୀତ ଲେଖି ଗାଇଲେ ବୋଲି , ସେ ସଂପର୍କରେ ଦାସୁରାମ କହନ୍ତି : 'ଜଣେ ଗରିବ ଆଦିବାସୀ କୁଇପିଲା ମୁଁ । ବାପାକୁ ପିଲାବେଳୁ ହରାଇଛି ଦୁଃଖ କଷ୍ଟରେ । ମାତ୍ର ସାତ କ୍ଲାସ ପଢ଼ିଛି । ମୋ ଭାଷା କୁଇ ପ୍ରତି ମୋର ବେଶୀ ପ୍ରେମ ଓ ମୋ ଭାଷାରେ ଲୋକ ଓ ଅନ୍ୟ ଆଦିବାସୀ 'ସରା' ଓ ଗରିବ ଲୋକଙ୍କ ଦୁଃଖ ମୋତେ ଦୁଃଖ ଦେଇଛି । ଆମର ପ୍ରାୟ ଦୁଇ ଏକର ସଂପତି ଥିଲା । ବାପାଙ୍କୁ ଋଣଗ୍ରସ୍ତ କରି ସାହୁକାରମାନେ ଜମି ନେଇଯାଇଛନ୍ତି । ସେହିପରି ଆମ ଗାଁ ଏବଂ ପଡ଼ୋଶୀ ଗାଁର ଅନେକ ନିରୀହ ଆଦିବାସୀଙ୍କ ଅବସ୍ଥା ଏହିପରି । ସାହୁକାରଙ୍କ ଶୋଷଣ ବିରୁଦ୍ଧରେ ନିଜର ଅଧିକାର , ନିଜର ଭାଷା , ନିଜର ଦେଶ ପାଇଁ ମୁଁ ସଂଗ୍ରାମ କରିବାକୁ ବାଧ ହୋଇଛି । କିନ୍ତୁ ଯାହା କହୁଛି ସରକାରୀ ଆଇନ ମଧ୍ୟରେ କରିଛି । ମୁଁ ସମାଜ ପରିବର୍ତ୍ତନର କଥା କହୁଛି , ବିପ୍ଳବର କଥା କହୁଛି । ମୋର ଭୁଲ୍ ନାହିଁ , କିଛି ଦୋଷ ନାହିଁ । ମାତ୍ର ସରକାର ମୋର ସ୍ୱରକୁ ବନ୍ଦ କରିବା ପାଇଁ ମୋ ଉପରେ ନାହିଁ ନଥିବା ଅତ୍ୟାଚାର କଲା । ୧୬ ମାସ କାଳ ମୋ'ପରି

ଜଣେ ନିର୍ଦ୍ଦୋଷକୁ ବନ୍ଦୀ କରି ରଖି କେଶ୍ ଦ୍ୱାରା ତାଡନା ଦେଉଛି । 'ଚାଷୀ ମୂଲିଆ ସମିତି' ର ଜଣେ ନେତା ଭାବେ ମୁଁ କୌଣସି ହିଂସାତ୍ମକ କାର୍ଯ୍ୟରେ ସଂପୃକ୍ତ ନଥିଲେ ମଧ , ସଂଗଠନକୁ ସରକାର ବେଆଇନ ଘୋଷଣା କରିନଥିଲେ ମଧ , ଓଡ଼ିଶା ଓ ଆନ୍ଧ୍ର ସରକାରଙ୍କ ଦୃଷ୍ଟିରେ ମୁଁ ଜଣେ ସନ୍ତ୍ରାସବାଦୀ ଓ ନକ୍ସଲବାଦୀ । ମୋ ନାମରେ ପୋଲିସ୍ ଅନେକ ମିଛ ମକୋଦ୍ଦମା କରିଛି । ଶେଷରେ ମୋ ଜୀବନରେ ନିର୍ଯ୍ୟାତନାର ପର୍ଯ୍ୟାୟ ଆରମ୍ଭ ହୋଇଛି ୨୦୦୩ ମସିହା ଫେବୃୟାରୀ ୬ ତାରିଖ ଦିନ ୧.୩୦ ମିନିଟ୍ ସମୟରୁ । ରାୟଗଡ଼ା ରେଳଷ୍ଟେସନ୍ ପାଖ ମା' ମଙ୍ଗଳା ହୋଟେଲ୍ ପଛପଟେ ପରିସ୍ରା କରୁଥିବା ବେଳେ ଆନ୍ଧ୍ର ସାଧା ପୋଷାକଧାରୀ ଗ୍ରେହାଉଣ୍ଡସ୍ ପୋଲିସ୍ ମୋତେ ନାଟକୀୟ ଭାବେ ଅପହରଣ କରି ବିଶାଖାପାଟଣା ନେଇଯାଇଥିଲେ । ବିନା ଅଭିଯୋଗରେ ଏକାଧିକ ମିଥ୍ୟା କେଶ୍ ରୁଜୁ କରିଥିଲେ । ଆନ୍ଧ୍ର ପୋଲିସ୍ କ୍ରମାଗତ ମାଡ଼ ଦେବା ସହିତ ପିସ୍ତଲର ଏନ୍‌କାଉଁଟରରେ ମାରି ଦେବାକୁ ଧମକ ଦେଇଥିଲେ । ତାଙ୍କୁ ମାଡ଼ ମାରି ଦୁଇଟି ଠେଙ୍ଗା ଭାଙ୍ଗି ଦେଇଥିଲେ । ପୋଲିସ୍ ନକ୍ସଲଙ୍କୁ ଧରାଇବା ପାଇଁ ବାଧ କରି କରେଣ୍ଟ ତାର ମାରିଥିଲେ ବୋଲି ସେ କହିଥିଲେ । ଆନ୍ଧ୍ର ପୋଲିସ୍ ଓଡ଼ିଶା ଆସି ନିରୀହ ଆଦିବାସୀଙ୍କ ଉପରେ ଦାଦାଗିରି ଜାରି ରଖିଥିଲା ବେଳେ ଓଡ଼ିଶା ସରକାର ନଜାଣିବା ଅଭିନୟ କରୁଥିବା କ୍ଷୋଭର ବିଷୟ ବୋଲି କହିଥିଲେ ।

ତାଙ୍କୁ ଆର.ଉଦୟଗିରୀ ଜେଲ୍‌ରେ ଛେଳିମେଣ୍ଢା ପରି ରଖାଯାଇଥିଲା ଓ ପେଟପୁରା ଖାଇବାକୁ ମଧ ଦିଆଯାଉନଥିଲା ଏବଂ ତାଙ୍କ ସଂପର୍କୀୟ ଓ ମା' ସମେତ ଅନ୍ୟମାନଙ୍କୁ ଦେଖା କରିବାକୁ ମଧ ସୁଯୋଗ ଦିଆଯାଉନଥିଲା ।

ଦାସୁରାମ କହିଥିଲେ ଯେ , ଆନ୍ଧ୍ର ଜେଲ୍‌ରେ ମଧ ବହୁ ନିରୀହ ଓଡ଼ିଆ ଆଦିବାସୀ ଅଛନ୍ତି ବିନା ଦୋଷରେ । ସେହିପରି ଆର.ଉଦୟଗିରୀ , ଗୁଣୁପୁର ଓ ପାରଳାଖେମୁଣ୍ଡି ଜେଲ୍‌ରେ ମଧ ବହୁ ନିରୀହ କୁଇ, ସଉରା ଓ ଅନ୍ୟାନ୍ୟ ଆଦିବାସୀ ଦଳିତ ଲୋକ ନିରୀହ ନକ୍ସଲ କେଶ୍‌ରେ ଦୁଃଖ ପାଉଛନ୍ତି । ତେଣୁ ପୋଲିସର ଦମନ ଓ ନିର୍ଯ୍ୟାତନା ବିରୁଦ୍ଧରେ ସ୍ୱର ଉଠାଇବା ପାଇଁ ସେ ନିବେଦନ କରିଛନ୍ତି ।

ସୌଜନ୍ୟ - ପ୍ରଜାତନ୍ତ୍ର - ୨୩/୮/୨୦୦୪

# ଆନ୍ଧ୍ର-ଓଡ଼ିଶା ପୋଲିସ୍ ମେଂଟ : ନକ୍ସଲ ଦମନ ନାଁରେ ନିର୍ଯ୍ୟାତନା

ନକ୍ସଲ ଉପଦ୍ରୁତ ଅଂଚଳରେ ନକ୍ସଲପନ୍ଥୀଙ୍କୁ ଦନ କରିବାକୁ ସରକାର ଦୃଢ଼ ପଦକ୍ଷେପ ନେଇଛନ୍ତି । ଆନ୍ଧ୍ର ସରକାରଙ୍କ ସହ ମିଶି ଓଡ଼ିଶା ସରକାର ନକ୍ସଲ ଦମନ କରିବାକୁ ମିଳିତ ଭାବେ କାର୍ଯ୍ୟ କରୁଛନ୍ତି । ମାତ୍ର ନକ୍ସଲ ଦମନ ନାଁରେ ନିରୀହ ଜନତାଙ୍କୁ ନିର୍ଯ୍ୟାତନା ଦିଆଯାଉଛି , ତାହା ଆନ୍ଧ୍ର ପ୍ରଦେଶରେ ପୋଲିସ୍ ଦ୍ୱାରା ନିର୍ଯ୍ୟାତିତ ହୋଇ ୧୬ ମାସ ଜେଲ୍‌ରେ ରହିଥିବା ଦାସୁରାମ ମାଲେକାଙ୍କ କାହାଣୀ ଶୁଣିଲେ ଅନୁଭବ କରିହୁଏ । ଗତ ୨୦୦୩ ମସିହା ଫେବୃଆରୀ ୬ ତାରିଖ ଦିନ ଦାସୁରାମକୁ ରାୟଗଡ଼ା ରେଳଷ୍ଟେସନ୍ ପାଖରୁ ଆନ୍ଧ୍ରର ଗ୍ରେହାଉଣ୍ଡ ପୋଲିସ୍ ଜବରଦସ୍ତ ନେଇଯାଇଥିଲେ ବୋଲି ସେ ଆଜି ଏଠାରେ ଆୟୋଜିତ ଏକ ସାମ୍ବାଦିକ ସମ୍ମିଳନୀରେ ପ୍ରକାଶ କରିଛନ୍ତି । ତାପରେ ତାଙ୍କୁ ହାତରେ ବୋମା ଧରିବାକୁ ବାଧ କରି ପାର୍ବତୀପୁର ନିଆଯାଇ ଅନ୍ୟ ନକ୍ସଲ ମାନଙ୍କ ଠିକଣା ମାଗିଥିଲେ । ସେ ନକ୍ସଲପନ୍ଥୀମାନଙ୍କୁ ଜାଣିନାହିଁ ବୋଲି ମନା କରିବାରୁ ତାକୁ ନିସ୍ଥୁକ ମାଡ଼ ମରାଯାଇଥିଲା । ପରେ ତାକୁ ନକ୍ସଲ ପୋଷାକ ପିନ୍ଧି କିଛି ଗ୍ରାମବାସୀଙ୍କୁ ଡ଼ାକି ଆଣି ଧରାଇବାକୁ ବାଧ କରିଥିଲେ । ମାତ୍ର ସେ ତାହା ନକରିବାରୁ ତାକୁ ମାଡ଼ ମରାଯାଇଥିଲା ବୋଲି ଦାସୁରାମ ଅଭିଯୋଗ କରିଛି । ଏପରିକି ମୁଣ୍ଡରେ ରିଭଲଭର ଲଗାଇ ଏନ୍‌କାଉଁଟର୍ କରିବାକୁ ଧମକ ଦିଆଯିବା ସହିତ ତାକୁ କରେଂଟ ଦିଆଯାଇଥିଲା । ତାକୁ ବିଶାଖାପାଟଣା ଜେଲରେ ରଖାଯାଇ ତା ବିରୋଧରେ ମିଥ୍ୟା କେଶ୍ ଦାୟର କରାଯାଇଥିଲା ବୋଲି ସେ ଅଭିଯୋଗ କରିଛି । ମାର୍ଚ୍ଚ ୬ ତାରିଖରେ ଓଡ଼ିଶା ପୋଲିସ ତାକୁ ଓଡ଼ିଶାକୁ ଆଣି ଅନୁରୂପ ନିର୍ଯ୍ୟାତନା ଦେଇଥିଲେ ବୋଲି ସେ ଅଭିଯୋଗ କରିଛି । ଓଡ଼ିଶାର ଅର.ଉଦୟଗିରୀ , ଗୁଣୁପୁର ଓ ପାରଳାଖେମୁଣ୍ଡି ଜେଲରେ ବହୁ ନିରୀହ ଆଦିବାସୀ ମିଥ୍ୟା ନକ୍ସଲ କେଶରେ ନିର୍ଯ୍ୟାତିତ ହେଉଛନ୍ତି ବୋଲି ସେ କହିଛି ।

ସୌଜନ୍ୟ - ଓଡ଼ିଶା ଭାସ୍କର-୨୩/୮/୨୦୦୪

# ନବୀନ ସବୁ ଜାଣି ନଜାଣିଲା ପରି ଅଭିନୟ କରୁଛନ୍ତି

ଆନ୍ଧ୍ର ପୋଲିସ୍ ସହ ଯୋଗାଯୋଗ କରି ଆଦିବାସୀ ଅଂଚଳରେ ଦାଦାଗିରି କରୁଛି । ନକ୍ସଲ ନାଁରେ ଆଦିବାସୀ ଲୋକଙ୍କୁ ଗିରଫ୍ କରୁଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସବୁ ଜାଣି ନଜାଣିଲା ପରି ଅଭିନୟ କରୁଛନ୍ତି ବୋଲି ଅଭିଯୋଗ କରିଛନ୍ତି ବିପ୍ଳବୀ କୁଇ କବି ଦାସୁରାମ ମାଲେକା ।

ଆଜି ଆୟୋଜିତ ଏକ ସାମ୍ବାଦିକ ସମ୍ମିଳନୀରେ ୨୭ ବର୍ଷୀୟ ଏହି କୁଇ କବି କହିଲେ ଯେ , ନକ୍ସଲମାନେ ଭଲ ଲୋକ । ପୋଲିସ ଆମକୁ ଲୁଟୁଛି । ଆଦିବାସୀ ମାନଙ୍କ ଜମି ଅଣଆଦିବାସୀ ମାନେ ଚାଷ କରୁଛନ୍ତି । ଚାଷୀ ମୂଲିଆ ସମିତି ଏକ ନକ୍ସଲ ସଂଗଠନ ନୁହଁ ବୋଲି ସେ ପ୍ରକାଶ କରିଛନ୍ତି ।

ଗଜପତି ଜିଲ୍ଲାର ଗୁଡୁରିପାଙ୍ଗା ମାଣ୍ଡିମେରା ଗ୍ରାମର ଦାସୁରାମ ବୁଲି ବୁଲି କବିତା ଗାଏ । ତାଙ୍କୁ ରାୟଗଡା ଠାରେ ଆନ୍ଧ୍ର ପୋଲିସ୍ ନକ୍ସାଲ ବୋଲି କହି ଗିରଫ୍ କରିଥିଲା । ୧୬ ମାସ ପରେ ସେ ଜେଲ୍‌ରୁ ଖଲାସ ହୋଇଆସିଛି । ଜେଲ୍ ମଧରେ ତାକୁ ଭୀଷଣ ନିର୍ଯ୍ୟାତନା ଦିଆଯାଇଥିଲା ବୋଲି ମଧ ସେ ଅଭିଯୋଗ କରିଛନ୍ତି । ଭୋଟ ବେଳେ ଟଙ୍କା ଦେଇ ନେତାମାନେ ଗରିବ ଆଦିବାସୀଙ୍କ ଠାରୁ ଭୋଟ୍ ନେଉଛନ୍ତି । ଆଦିବାସୀ ମାନଙ୍କୁ ତାଙ୍କ ଜମି ଫେରାଇ ଦେବା ଓ ପୋଲିସ୍ ଅତ୍ୟାଚାର ବନ୍ଦ କରିବା ପାଇଁ ସେ ଦାବି କରିଛନ୍ତି । ଚାଷୀ ମୂଲିଆ ସମିତିର ସେ ସଭ୍ୟ ଥିବାରୁ ପୋଲିସ୍ ପକ୍ଷରୁ ତାଙ୍କୁ ଗିରଫ୍ କରାଯାଇଥିଲା । ମାତ୍ର ଏହି ସଂଗଠନ ନକ୍ସାଲ ନୁହେଁ ବୋଲି ସେ କହିଛନ୍ତି । ପୋଲିସ ପକ୍ଷରୁ ଆଦିବାସୀମାନଙ୍କ ଉପରେ ବିଭିନ୍ନ ଅତ୍ୟାଚାର ସଂପର୍କରେ ସେ ବିବରଣୀ ପ୍ରଦାନ କରିଥିଲେ ।

*ସୌଜନ୍ୟ - ସମୟ - ୨୩/୮/୨୦୦୪*

# ଆନ୍ଧ୍ର ଓ ଓଡ଼ିଶା ପୁଲିସର ନିର୍ଯ୍ୟାତନା ଓ ମିଥ୍ୟା କେଶ୍ ରେ ମୁଁ ଆଜି ସର୍ବହରା

## ବିପ୍ଲବୀ କବି , ଆଦିବାସୀ ନେତା ଦାସୁରାମର କରୁଣ କାହାଣୀ

ଜମି ଓ ଜଙ୍ଗଲ ପାଇଁ ଆମେ ଲଢ଼େଇ କରୁଥିଲୁ । ମୁଁ ଚାଷୀ ମୂଲିଆ ସମିତିର ଜଣେ ନେତା ଥିଲି । କୁଇ ଭାଷାରେ ଗୀତ ଲେଖିବା ଓ ବିପ୍ଲବୀ କବିତା ବୋଲିବା ମୋର ଅଭ୍ୟାସ ; ମାତ୍ର ମୁଁ କୌଣସି ହିଂସାତ୍ମକ ଘଟଣାରେ ସଂପୃକ୍ତ ନଥିଲେ ମଧ ସରକାରଙ୍କ ଦୃଷ୍ଟିରେ ମୁଁ ଜଣେ ସନ୍ତ୍ରାସବାଦୀ ପାଲଟିଯାଇଛି । ଆନ୍ଧ୍ର ଓ ଓଡ଼ିଶା ପୋଲିସ ଦ୍ୱାରା ମୁଁ ନିର୍ଯ୍ୟାତିତ । ଆନ୍ଧ୍ର ପୋଲିସ ମତେ ସନ୍ତ୍ରାସବାଦୀ ବୋଲି ଆଖ୍ୟା ଦେଇ ବିଶାଖାପାଟଣା ଜେଲରେ ୧୬ ଦିନ ରଖିଥିଲେ । ପୋଲିସ ଅମାନୁଷିକ ଅତ୍ୟାଚାର ଓ ୧୬ ଦିନର ବନ୍ଦୀ ଜୀବନକୁ ମୁଁ ଭାଷାରେ ପ୍ରକାଶ କରିପାରିବି ନାହିଁ । ଜାମିନରେ ମୁକୁଳିବା ପାଇଁ ଘରର ବଳଦ , କଂସା , ଗିନା ବିକି , ବାଡ଼ିକୁ ବନ୍ଧା ପକାଇ ଦେଇଛନ୍ତି । ସରକାରଙ୍କ ମିଥ୍ୟା ମାମଲାରେ ମୁଁ ଆଜି ସର୍ବହରା ।

ମୋ ଭଳି ବହୁ ଗରିବ ଲୋକ ଏଭଳି ସର୍ବସ୍ୱାନ୍ତ ହୋଇଯାଇଛନ୍ତି । ଏହାଥିଲା ଗଜପତି ଜିଲ୍ଲା ମାଣ୍ଡିମେରାର ଗୁଡରିପଙ୍କା ଗ୍ରାମର ୨୭ ବର୍ଷିଆ ଯୁବକ ତଥା ବିପ୍ଲବୀ କୁଇ କବି ଓ ଗାୟକ ଦାସୁରାମ ମାଲେକାର ଅଭିଯୋଗ ।

ଆନ୍ଧ୍ର ପୋଲିସ ଦ୍ୱାରା ଗିରଫ ହୋଇ ନିକଟରେ ଜାମିନରେ ଆସିବା ପରେ ଆଜି ଲୋହିଆ ଏକାଡ଼େମୀ ଠାରେ ସାମ୍ବାଦିକମାନଙ୍କୁ ଭେଟି ଦାସୁରାମ ତା' ପ୍ରତି ହୋଇଥିବା ଅମାନୁଷିକ ଅତ୍ୟାଚାର ଓ ପୋଲିସର ମିଥ୍ୟା ମାମଲା ସଂପର୍କରେ ଗୁରୁତର ତଥ୍ୟ ପ୍ରଦାନ କରିଥିଲା । ଦାସୁରାମ ସାମ୍ବାଦିକମାନଙ୍କୁ କହିଥିଲା ଯେ - 'ମୁଁ ଗରିବ ଆଦିବାସୀ କୁଇ ପିଲା । ବାପାଙ୍କୁ ପିଲାବେଳୁ ହରାଇ ଦୁଃଖ ଓ ଦୈନ୍ୟ ଭିତରେ ମୁଁ ବିପ୍ଳବୀ ରାଜନୀତି ପ୍ରତି ଆକୃଷ୍ଟ ହେଲି । ମୁଁ କୁଇ ଭାଷାରେ ଆଦିବାସୀଙ୍କ ଦୁଃଖ ଓ ନିର୍ଯ୍ୟାତନାର କଥା କବିତାରେ ଲେଖିଛି । ମୋର କିଛି ଭୁଲ ନଥିଲା ; ମାତ୍ର ଏ ଧନୀ ଲୋକର ସରକାର , ଏ ଠକ ସରକାର ମୋର କଣ୍ଠକୁ ଜବରଦସ୍ତ ବନ୍ଦ କରିବା ପାଇଁ ମୋ ଉପରେ ନାହିଁ ନଥିବା ଅତ୍ୟାଚାର କଲା ।' ୧୬ ମାସ କାଳ ମୋ ପରି ଜଣେ ନିର୍ଦ୍ଦୋଷକୁ ବନ୍ଦୀ କରି ମିଛ କେଶ ଦ୍ୱାରା ତାଡ଼ନା ଦେଲା । ଆଦିବାସୀଙ୍କର ସମସ୍ୟା , ତାଙ୍କୁ କିପରି ସରକାର ଓ ସାହୁକାର ଠକୁଛି , କିପରି ସେମାନେ ମୁକ୍ତି ପାଇବେ ଏ ବିଷୟରେ ମୁଁ ମୋ କୁଇ ଭାଷାରେ ଗୀତ ଲେଖିଥିବାରୁ ଓ ଗାଉଥିବାରୁ ସରକାରଙ୍କ ନଜରରେ ମୁଁ ହେଲି ନକ୍ସଲପନ୍ଥୀ ।

ମୁଁ ନକ୍ସଲପନ୍ଥୀ ବେଶରେ କେବେ ଥିବାର , କିଛି କରିଥିବାର ପ୍ରମାଣ ସରକାର

ଦେଇପାରିବେ କି ବୋଲି ପ୍ରଶ୍ନ କରି ସେ କହିଥିଲେ ଯେ - ମିଛ କେଶରେ ଗିରଫ କରି କିପରି ମୋତେ ଜୀବନରେ ମାରିଦେବାକୁ ଚେଷ୍ଟା କରୁଥିଲେ , ସେ କଥା ମୋ ଆଖି ଆଗରେ ଆଜି ଜଳଜଳ ଦେଖାଯାଉଛି । ଓଡ଼ିଶାର ସୀମାନ୍ତ ଜିଲ୍ଲାମାନଙ୍କରେ ଆନ୍ଧ୍ର ପୋଲିସ ଦାଦାଗିରି ଦେଖାଉଛି ବୋଲି ଆଗରୁ ମୁଁ ଶୁଣିଥିଲି ; ମାତ୍ର ଏବେ ନିଜେ ଅନୁଭବ କଲି । ରାୟଗଡ଼ା ରେଳ ଷ୍ଟେସନ୍ ଛକରୁ ମୁଁ ପରିଶ୍ରା କରୁଛି । ଦୁଇଜଣ ସାଧା ପୋଷାକଧାରୀ ଲୋକ ଆସି ମୋତେ ଫିଲ୍ମ ଷ୍ଟାଇଲରେ ଧରିନେଲେ । ସେମାନେ ଥିଲେ ଆନ୍ଧ୍ରର 'ଗ୍ରେହାଉଣ୍ଡ ପୋଲିସ' । 'କୁରଚ କୁରଚ' ବୋଲି ମୋତେ ତେଲେଗୁରେ କହିଲେ । ସେମାନଙ୍କର ମୋଟର ସାଇକେଲରେ ମୋତେ ଜବରଦସ୍ତ ବସାଇଲେ । କମରଡ଼ା ପୋଲିସ ଷ୍ଟେସନ୍‌କୁ ନେଇଗଲେ । ମୋତେ ପୁରା ଲଙ୍ଗଳା କରିଦେଲେ । ମୋତେ ଗୋଟିଏ ବୋମା ଧରାଇ କହିଲେ 'ଏଇଟାକୁ ଧରି ଚାଲ' । ମୁଁ ମନାକଲି , ଥାନା ଇନିସ୍‌ପେକ୍ଟର ପି.ବିଜୟ କୁମାର ମୋତେ ନିସ୍ଥୁକ ମାଡ଼ ଦେଲେ । କହିଲେ ତୁ କିଛି ଲୋକଙ୍କୁ ଧରାଇ ଦେ , ତା'ହେଲେ ତୋତେ ଛାଡ଼ିଦେବୁ ।

ତା'ପରେ ସେମାନେ ଏକ ଗୁପ୍ତସ୍ଥାନକୁ ନେଇ ମୋ ମୁଣ୍ଡରେ ପିସ୍ତଲ ଲଗାଇ ଗୁଳି କରିଦେବାକୁ ଧମକ ଦେଲେ । ମୋ ଟଙ୍କା ଓ ଘଣ୍ଟା ପୋଲିସ ନେଇଗଲେ । କରେଣ୍ଟ ତାର ଧରିବାକୁ ବାଧ କଲେ । ପରଦିନ ସକାଳେ ମାଡ଼ ଓ କରେଣ୍ଟ ଖାଇ ମୁଁ ଚେତା ହରାଇଲି । ମାର୍ଚ୍ଚ ୬ ତାରିଖରେ ଓଡ଼ିଶା ପୋଲିସ ମୋତେ ମିଛ କେଶ ଦେଖାଇ ଓଡ଼ିଶା ଆଣିଲେ , ମୁଁ କାହାରିକୁ ଧରାଇ ନଦେଲେ ସେଇଠି ଗୁଳିକରି ଫିଙ୍ଗି ଦିଅ ବୋଲି ଏସ୍.ପି କହିଥିଲେ । ମାର୍ଚ୍ଚ ୧୩ ତାରିଖରେ ଆହୁରି ୩ଟି ମିଥ୍ୟା କେଶ ଦେଇ ମୋତେ ସାଂଘାତିକ ଭାବେ ନିର୍ଯ୍ୟାତନା ଦେଇଥିଲେ ବୋଲି ସେ କହିଥିଲା । ନକ୍ସଲମାନେ ସେଠାରେ କିଛି ଖରାପ କାମ କରୁନାହାନ୍ତି , ବରଂ ବହୁତ ଭଲ କାମସବୁ କରୁଛନ୍ତି ବୋଲି ଦାସୁରାମ କହିଥିଲା ।

*ସୌଜନ୍ୟ - ସମାଜ- ୨୪/୮/୨୦୦୪*

# 'ୱାଦୁ ମାରୁ ହାବେତାସୁ ନେଂଜୁ ରଣ୍ଡାଆନା'

## କବିତା ପଦଟିଏ ପାଇଁ ୧୬ ମାସ ଜେଲ୍

'ୱାଦୁ ମାରୁ ହାବେତାସୁ ନେଂଜୁ ରଣ୍ଡାଆନା' । କୁଇଭାଷାର କବିତାର ପଦଟିଏ । ଏହାର ଅର୍ଥ ହେଉଛି 'ଆସ ଆମେ ସମସ୍ତେ ଏକ ହେବା' । ଏ କବିତା ଗାଇବାରେ ଆଇନଗତ ପ୍ରତିବନ୍ଧକ ନାହିଁ । କିନ୍ତୁ ଏହାକୁ ଗାଇ ୨୭ ବର୍ଷର ଯୁବକ ଦାସୁରାମ ମାଲେକାଙ୍କୁ ମିଳିଛି ୧୬ ମାସର ଜେଲଦଣ୍ଡ ଓ ପୋଲିସର ଅକଥନୀୟ ନିର୍ଯ୍ୟାତନା ।

ଦାସୁରାମ ଏ କବିତା ଗାଇବା ପରେ ହୋଇଛନ୍ତି ବିପ୍ଳବୀ କୁଇ କବି । କିନ୍ତୁ ପୋଲିସ୍ ଦୃଷ୍ଟିରେ ନକ୍ସଲ । ତେଣୁ ଗତବର୍ଷ ଫେବୃଆରୀ ୬ ତାରିଖରେ ଆନ୍ଧ୍ର ପୋଲିସ ଅଚାନକ ରାୟଗଡ଼ା ରେଳ ଷ୍ଟେସନ୍ ପାଖରୁ ଟେକିନେଇ ଯାଇଥିଲା ଦାସୁରାମଙ୍କୁ । ଆନ୍ଧ୍ରର ଗ୍ରେହାଉଣ୍ଡସ୍ ଫୋର୍ସ ଦାସୁରାମଙ୍କୁ ନେଇ ବିଭିନ୍ନ ଗୋପନୀୟ ସ୍ଥାନରେ ୧୬ ମାସ ଧରି ନିର୍ଯ୍ୟାତନା ଦେଲା । ଗତ ଜୁନ୍ ୬ ତାରିଖରେ ସେ ମୁକ୍ତି ପାଇବା ପରେ ପୋଲିସ ଆଖିରୁ ବର୍ତ୍ତି ଆଜି ପହଞ୍ଚିଥିଲେ ରାଜଧାନୀରେ । କୁଇ ଭାଷାର ଏହି ଯୁବ ବିପ୍ଳବୀ କବି ରାଜଧାନୀରେ ଗଣମାଧ୍ୟମର ପ୍ରତିନିଧିମାନଙ୍କୁ ଭେଟି ଗଜପତି ଜିଲ୍ଲାରେ ଚାଲିଥିବା ନକ୍ସଲ ଆନ୍ଦୋଳନ , ପୋଲିସର ନିର୍ଯ୍ୟାତନା , ଅଣ ଆଦିବାସୀଙ୍କ ପାଦୁର୍ଭାବ ସଂପର୍କରେ ଦୃଷ୍ଟି ଆକର୍ଷଣ କରିଥିଲେ ।

ଦାସୁରାମଙ୍କ କହିବାନୁଯାୟୀ ନକ୍ସଲମାନେ ଭଲ ଲୋକ । ତାଙ୍କ ଗାଁକୁ (ଗଜପତିର ଅଡବା ଅନ୍ତର୍ଗତ ଗୁଡୁରିପଙ୍କା) ସେମାନେ ବେଳେ ବେଳେ ଆସନ୍ତି । ଆଦିବାସୀଙ୍କ ଉପରେ ପୋଲିସ ନିର୍ଯ୍ୟାତନା ବିରୋଧରେ ସ୍ୱର ଉତୋଳନ କରନ୍ତି । ପୁଣି ଚାଲିଯାନ୍ତି । କିନ୍ତୁ ତାଙ୍କ ଅଂଚଳରେ ଆଦିବାସୀମାନଙ୍କର ଚାଷୀମୂଲିଆ ସମିତି ନାମରେ ସଂଗଠନ ଅଛି , ଯେକି ଶୋଷଣ ଅତ୍ୟାଚାର ବିରୋଧରେ ଲଢ଼େଇ କରେ । ଆଉ ସେହି ଲଢ଼େଇ ଅଭିଯାନରେ ସେ ଗାଁ ଗାଁରେ ସଭା-ବୈଠକରେ ଗାଆନ୍ତି ନିଜ ଲେଖାର କୁଇ କବିତା । ଏ କବିତାରେ ଲୋକମାନଙ୍କୁ ଶୋଷଣ , ଅତ୍ୟାଚାର , ଅନ୍ୟାୟ ବିରୋଧରେ ଲଢିବାକୁ ସେ ଆହ୍ୱାନ ଦେଇଥାନ୍ତି । ଚାଷୀ ମୂଲିଆ ସମିତିର ପ୍ରତିବାଦ ଯୋଗୁଁ ତାଙ୍କ ଅଂଚଳରେ ଦିନକୁ ୨୦ ଟଙ୍କା ବଦଳରେ ଏବେ ୩୦ ଟଙ୍କା ମଜୁରୀ ମିଳୁଛି ।

ସେ କହିଥିଲେ ଯେ ପୋଲିସ ବେଶୀ ଅତ୍ୟାଚାର କରୁଛି ଆଦିବାସୀଙ୍କ ଉପରେ । ଅଣ-ଆଦିବାସୀଙ୍କ ସହ ସାମିଲ ହୋଇ ପୋଲିସ ଆଦିବାସୀର କୁକୁଡ଼ା , ଛେଳି ନେଇଯାଉଛି । ଅଣ-ଆଦିବାସୀ ଧାନ କାଟି ନେଉଛନ୍ତି , ଏହାର ପ୍ରତିବାଦ କଲେ ମିଛ

ମୋକଦ୍ଦମା କରିଦେଉଛନ୍ତି । ଆଦିବାସୀ ଔଷଧ ଟିକେ ପାଉନି , ଖାଇବାକୁ ପାଉନି , କିନ୍ତୁ ଏହା ବିରୋଧରେ ସ୍ୱର ଉଠାଇଲେ ପୋଲିସ ବାନ୍ଧି ନେଉଛି ବେଆଇନ କହି । ଗତବର୍ଷ ଫେବୃଆରୀ ୧ ତାରିଖରେ ଅଡବା ଥାନା ପୋଲିସ ତାଙ୍କ ଗାଁରେ ପଶିଥିଲେ । ଗାଁରୁ ପୋଲିସ ଲୁଟ୍ କରିଥିବା ଜିନିଷର ବିବରଣୀ ଦେଇ ଦାସୁରାମ କହିଥିଲେ ଯେ , ସେଦିନ ପୋଲିସ ଦିନ ୧୧ଟାରେ ଆସି ନେଇଥିଲା - ପାଉଲ ମାଝୀର ଖାଉଟି କାର୍ଡ ଓ ୧୨ ଶହ ଟଙ୍କା , ରସାନ୍ତରର ସୁନା , ରୂପା , ବାଡିମା ମାଝୀର ମରିଚ , ବିରି , କାନ୍ଦୁଲ , କାଶୁ ମଳିକର ଜହ୍ନା , ମାକାର ମଳିକର ରନ୍ଧା ଗାଈ ମାଂସ , ସୁଲତାନ ମଲିକର କାନ୍ଦୁଲ ଓ ଶୁଖିଲା ଗାଈ ମାଂସ , ପ୍ରକାଶର କୁକୁଡ଼ା ଅଣ୍ଡା ଓ ଗାଈ ଚର୍ବି , ନିକ୍ଲାସର ୧୧ ହଜାର ଟଙ୍କା ଓ ପାଚିଲା କଦଳୀ , ଆନନ୍ଦ ମଳିକର ଫଟୋପରିଚୟ ପତ୍ର ଏବଂ ଅନ୍ୟମାନଙ୍କର ପ୍ରାୟ ୧୦ ହଜାର ଟଙ୍କା । ଦାସୁରାମଙ୍କ ଅଭିଯୋଗ ଯେ , ଆନ୍ଧ୍ର ପୋଲିସ ଦାଦାଗିରି କରୁଛି । ଓଡ଼ିଶା ପୋଲିସ ତାକୁ ସହଯୋଗ କରୁଛି । ତେଣୁ ଆଦିବାସୀ ଲୋକ ଆନ୍ଦୋଳନ କରୁଛନ୍ତି । ଆଦିବାସୀଙ୍କୁ ପୋଲିସ ଶୋଷଣରୁ ମୁକ୍ତ ରଖିବା ସହ ଅଣ ଆଦିବାସୀଙ୍କ ଠାରୁ ତାଙ୍କ ଜମି ଫେରାଇ ଦେଲେ ଏ ଆନ୍ଦୋଳନ ହେବ ନାହିଁ ବୋଲି ଦାସୁରାମ କହିଛନ୍ତି ।

*ସୌଜନ୍ୟ - ପ୍ରଗତିବାଦୀ-୨୩/୮/୨୦୦୪*

